# ଭୁଲ କାହାର ?



ଶ୍ରୀ ଚନ୍ଦ୍ରମଣି ଦାସ

?

?

?

ପ୍ରକାଶକ—

ଚୌଧୁରୀ ଶ୍ରୀ ଲୋକନାଥ ନନ୍ଦ

ପ୍ରୋପ୍ରାଇଟର

ସାରସ୍ୱତ ଭଣ୍ଡାର

ପୋ: ଅ: ଚାନ୍ଦନୀଚୌକ

କଟକ ।

ବାରଅଣା

# ଭୁଲ କାହାର ?



"ଆଶା ହସି ହସି କହିଲା—ଅପା, ତୋ' ପାଇଁ ଗୋଟାଏ ଭଲ ଜିନିଷ ଆଣିଛି, କ'ଣ ଦେବୁ କହ, ନହେଲେ ଜମାରୁ ଦେବିନାହିଁ ।"

ଦୋ'ମହଲା କୋଠା । ବାଁପାଖକୁ ମଟର ରଖିବା ପାଇଁ ଛୋଟଘରଟିଏ । ଅଗରେ ଫୁଲବଗିଚା ନ ଥିଲେବି, ଫୁଲକୁଣ୍ଡ କେତୋଟି ବେଶ୍ ସଜାସଜା ହୋଇ ଥୁଆହୋଇଛି ।

ଡେପୁଟି ଶରତବାବୁଙ୍କ ଘର । ସକାଳଠୁଁ ସନ୍ଧ୍ୟା ଯାଏ ମଟର, ଘୋଡ଼ାଗାଡ଼ିର ଛୁଟିଣି ନ ଥାଏ । ଗୃହରଖାଳର, ସାଙ୍ଗସାଥି, ଯୁବତୀ ଝିଅମାନଙ୍କର ମଧୁରଗୁଞ୍ଜ କୁହୁ କୁହୁ ହସ, ପୁଣି ଗ୍ରାମୋଫୋନ୍ ଦିନ ଭିତରେ ବାର ଘଣ୍ଟା ବାଜୁଛି । କେତେବେଳେ କିଏ ଉପର ମହଲାରେ ରେକର୍ଡ ବସାଇଲାଣି ତ "ଆସ ହେ ସେ ଝବରେ ଅଜ ରଜାଘର ଖାନା" । ଆଉ ଦ' ଘଡ଼ିକ ପରେ ଉପର ମହଲାରେ ବାଜିଲାଣି "ଦେଖିଲେ ତାହାଙ୍କ ଲାଜମାଡେ ସଖି, ନ ଦେଖିଲେ ଝୁରି ମରୁଥାଇଁ"—ଇମିତି କେତେ ।

ଏହି କୋଠାକୁ ଲାଗି ଆଉ ଗୋଟିଏ ଶ୍ରେଷ୍ଠ ଏକମହଲା ଭଡ଼ା ବସାଘର । ଦୋ'ଟି ବଖରା । ସେପେଇ ଘରଟିଏ, ଅଗଣାରେ

ତଗଣ୍ଟ ଗଛଟି । ସାଜସଜା ସେମିତ କିଛି ନାହିଁ । ଏ ଦୋ'ମହଲା କୋଠା ବାରଣ୍ଡାରେ ଠିଆହୋଇ ଚାହିଁଲେ ସେ ଗଞ୍ଜାର ଆଉ କିଛି ଅଛପା ରହେନାହିଁ ।

ମଣିଷ ଭିତରେ ସେ ଘରେ ବାବୁଟିଏ ଚାକରଟିଏ । ସନ୍ଧ୍ୟା ବେଳେ ଗଞ୍ଜାଟିରେ ଆଲୁଅଟି ଜଳି ଉଠିଲେ, ମଣିଷ ଥିବା ବୋଲି ଜଣାଯାଏ, ନଚେତ୍ ନାହିଁ । ସବୁବେଳେ ଖାଁ ଖାଁ ନିଶୂନ । ଦିନ ଭିତରେ କେତେଥିବେଳେ ସେ ଘରେ ପ୍ରବେଶଇବାକୁ ହୁଏ, କେତେବେଳେ ବାବୁ କଚେରିକୁ ଯାଆନ୍ତି, ସେ କଥା ଏ' ଘର ତୁଳନାରେ କିଛି ନୁହେଁ ।

ଥାନା ଘଣ୍ଟାରେ ଠନ୍ ଠନ୍ କରି ଏଗାରଟା ବାଜିଲେ ବାବୁଟି ହାତରେ ଛତା ଖଣ୍ଡିଏ ଧରି କଚେରିକୁ ବାହାରି ପଡ଼ନ୍ତି । ବାବୁ ଭଲ ବାବୁ । କହିବାର କଥା, ବୟସ ବାଇଶ ତେଇଶରୁ ବେଶି ନୁହେଁ । ଦେହର ରଙ୍ଗ ଗୋରା ନୁହେଁ ସାବନା । ମୁହଁର ଗଢଣଟି ବେଶ୍ । ପୋଷାକପତ୍ର ଖୁବ୍ ସାଫସୁତୁରା । ଗୋଡ଼ରେ ଶ୍ରୀମ ବାବୁଙ୍କ ଦୋକାନର ସୁନ୍ଦର କଳାଯୋତା । ହାତରେ ସୁନାର ଘଣ୍ଟା । ଉସାଣିଆ ଆଖିରେ ଗାଟାପାର୍ଚ୍ଚାର ଗୋଲ ଚଷମା, ମୁହଁକୁ ଯେମିତ ସୁନ୍ଦର ଦେଖା ଯାଉଛି; ସେମିତ ଯୌବନର ଜ୍ୟୋତି ଦ'ଗୁଣ ଫୁଟି ବାହାରୁଛି । ବାବୁ ଛତାଟି ହଲାଇ ହଲାଇ ଚାଲନ୍ତି ନିକଟରେ ଥିବା ଜମିଦାରଙ୍କ କଚେରୀକୁ । ଚାକରଟି କୁଆଡ଼େ ବୁଲିଯାଏ, ନୋଇଲେ ଘରେ ବସି ଭାଗବତ କିମ୍ବା ଗୋପୀଭାଷା ବୋଲେ ।

ଶରତ ବାବୁଙ୍କର ଝିଅଟିଏ, ପୁଅଟିଏ । ବଡ଼ ଝିଅଟି ବାହା ହୋଇ ସାରିଛି, ଘରେ ଆଉ ଚାରି । ସମସ୍ତଙ୍କର ଏବ ମନ,

ଏତ କଥା । ତା' ଭିତରେ ଗୋଟିଏ ସ୍ଥାନ, ଅଜ୍ଞ ଛଟନାଟି ଘରେ—ରହୁଛ ଝିଅ । ଦିନେ ଦିନେ ଉପର ମହଲରେ ଖେଳୁ ଖେଳୁ ବାଇଶକୋପ ବାଜା ବାଜିଲେ, ବା ସହରରେ ଢେଙ୍ଗଁ ଢୋ ଢା ଶୁଭିଲେ ବରଣ୍ଡାରେ ଠିଆହୋଇ ଏମାନେ ବାହାରକୁ ଚାହାଁନ୍ତି । ଦେଖୁ ଦେଖୁ ଆଖି ଫେରି ଆସେ ପାଖ ଝୋଟ ଖଞ୍ଜାଟିକୁ । ତାଙ୍କ ଭିତରୁ କିଏ ଅନ୍ୟ ଜଣକୁ ଠେଲିଦେଇ କହେ— ଦେଖିଲୁଣି ଲୋ ! ସେ ଟୋକାଟି କିମିତି ବସି ବସି ବହି ପଢ଼ୁଛି । ଆଉ ଜଣେ କୌତୁକ କରିବାପାଇଁ ଡାକେ—ଟୋକା ! ହେ ଟୋକା !

ଗୁଜର ପିଲାଟି ବହି ପଢ଼ିବା ବନ୍ଦ କରି ବଙ୍କ ବଙ୍କ ହୋଇ ଉପରକୁ ଚାହେଁ । ସବୁସାନ ବାବୁଙ୍କ ଝିଅ, ତା' ଆଖି ଝଲସି ଯାଏ । ସ୍ୱାଙ୍କ ଭିତରୁ କିଏ କଥା ଉପରେ କଥା ମଡ଼ାଇ କହେ ତୋ' ବାବୁ କୁଆଡ଼େ ଯାଇଛି କି ? ଏ କଥା ତା ପାଟିରୁ ନ ସରୁଣୁ ଅନ୍ୟମାନେ ଠେଲାଠେଲି ହୋଇ କହନ୍ତି—କିଏଲୋ ସେ ବାବୁ ଟୋଇଁ ତୋର କି ନାମ ? ଦେଖିଲଣି ନା, ଆମ ଆଗରେ ଏ ପୁଣି ବାବୁଟାକୁ ଖୋଜୁଛି । ଗୁଜରପିଲାଟି ଉତ୍ତର ଦିଏ, ବାବୁ କଟେରକୁ ଯାଇଛନ୍ତି, ଫେରିବେ କେତେ ଘଡ଼ିରେ ଯାଇଁ ।

ପୁଣି ଉନଟାପାକ ଝିଅ ଉଗୁରହୋଇ ଗୋଟାକ ପିଠିରେ ଗୋଟାଏ ମୁହଁ ରଖାରଖି ହୋଇ ପଚାରନ୍ତି—ତୋ' ବାବୁଙ୍କ ନାଁ କଅଣରେ ? ଗୁଜର ପିଲାଟି କହେ—ଅମ ବାବୁଙ୍କ ନାଁ ରାଜକିଶୋର ବାବୁ । ଝିଅ ଏ ଉନହେଁ କଚକଚ ହସି କୁତୂହଳ କରି ପଚାରନ୍ତି, ରାଜକିଶୋର ନା ବ୍ରଜକିଶୋର ?

"ନା, ରାଜ କିଶୋର ତ" ! କମିତି ବେଢେବେଳ କହିଯାଏ ।

ରାଜକିଶୋର ବାବୁ ଜମିଦାରଙ୍କର ହିସାବପତ୍ର ହାନି ଲାଭ ବୁଝି, ଫେରୁ ଫେରୁ ରାତି ସାଢ଼େ ଆଠଟା। ଦୁଆର ମୁହଁରେ ହାତ ମାରି ଡାକନ୍ତି—ସନିଆ, ସନିଆରେ ! କବାଟ ଖୋଲିଲା। ସନିଆ ହାତରେ ଆଲୁଅଟି ଧରି ଖୋଲି ଦେଇ ପଚାରେ ଏତେ ବେଳଯାଏ କେଉଁଠି ଥିଲେ ବାବୁ ? ଭାତ ତୁଣ ଥଣ୍ଡା ହେବାକୁ ହେଲାଣି ! ବାବୁଟି ଉତ୍ତର ଦିଅନ୍ତି ବଜାର ଆଡ଼େ ଟିକିଏ କାମ ଥିଲା, ପାଣି ଲୋଟା ଆଣିଲୁ ? ପିଲାଟି ପାଣି ଲୋଟା ଆଣି ଦିଏ।

ରାଜକିଶୋର କୋଟ, ଜାମା ଖୋଲି ଗୋଡ଼ ଧୋଇବା ପାଇଁ ଦୁଆରକୁ ଆସନ୍ତି। ପାଖ ଦୋ'ମହଲା କୋଠାର ବିଜୁଳି ଆଲୁଅ ଏ ଝରଣାଟି ଯାକ ବିଛୁଡ଼ି ହୋଇ ପଡ଼ୁଥାଏ। କେଡ଼େ ଦପା, ଚକଚକେ ଶୋଭା। ଯେତେ ଯେମିତି ଏ ଘରର ଛୋଟ ନାଲି ଲଣ୍ଠଣ ଆଲୁଅଟିକୁ ଗର୍ବରେ ହସି ଉଡ଼ାଇ ଦେବାକୁ ଆସୁଛି। କିନ୍ତୁ ନାଲି ଆଲୁଅଟିର ମନରେ ଦୁଃଖ ନାହିଁ, ସେ ହସି ହସି କହୁଛି—ନା, ତମ ରୂପରେ ଆମର କଣ ଯାଏଆସେ ! ଆମ ଦୁଃଖରେ ଆମେ ଦୁଃଖୀ, ତମର ସେ ବଡ଼ଲୋକିରୁ ଆମକୁ କଣ ମିଳିବ।

ରାଜକିଶୋର ଗୋଡ଼ ହାତ ଧୋଇ ଶୋଇବା ଘର ଖଟଟି ଉପରେ ଯାଇ ଶୋଇ ପଡ଼ିଲେ। ଆଖିକୁ ନିଦ ଆସିଲା ନାହିଁ। ଭାବନା ଉପରେ ଭାବନା କୂଳ ଅକୂଳ ମାଡ଼ି ଚାଲିଲା। କାଲି କଚେରିରେ କେତେ କାମ। ହରିପଧାନ ଉପରେ ଖଜଣା ବାକି, କାଲି ନାଲିଶ ହେବ, ଗୋପୀ ସାହାଣୀ କାହିଁ ବୋହାଲ ଅଧେ ଦେଇ ଯାଇଛି, ମାନେଜର ବାବୁଙ୍କୁ କହି ଆଜି ମାସେଅଧେ ଟାଳି

ପାରନ୍ତେ କି କେତେ ଭଲ ହୁଅନ୍ତା । ବଗିଚା ଗଛର ଲେମ୍ବୁ । ଛୁଆଟା ପିଇ ଦିଲା, କେତେ ଫୂର୍ତ୍ତି ଆସିବ । ଆଗରେ ପୁଣି ଶ୍ରାବଣ । ଚାରିଆଡ଼ ତ ହାଣ୍ଡିଠୁଣ । ସେ ବିଚାରର କି ଦୋଷ !

ଏମିତି କେତେ କଥା ଭାବୁ ଭାବୁ କେତେବେଳେ ସେ ତା' ଭାବନାଟା ଗାଁରେ ପହଞ୍ଚି, ତାଙ୍କ ଜଳବାରି ଝଙ୍କାଳିଆ ଲେମ୍ବୁ ଗଛ ମୂଳେ କନକ ସାଥିରେ ଡିଆଁ ଡେଇଁ କଲାଣି, ସେ କଥା ତାର ଖିଆଲ ନାହିଁ !

ସ୍ୱପ୍ନ ପରି ଭାବି ଗଲିଣି—ପାଞ୍ଚ ବରଷ ତଳର କଥା । ଯେତେବେଳେ ତାକୁ ସତରକି ଅଠର ବରଷ । ଏନ୍ଟ୍ରେନ୍ସ ପରୀକ୍ଷା ଦେଇବାକୁ ଯାଉଥାଏ । ଦୀର୍ଘ ଚାରିବର୍ଷ କଟକ ସହରରେ ରହି ଯେତେବେଳେ ସେ ଗାଁ ଦାଣ୍ଡରେ ପାଦ ଦେଲା, ସେତେବେଳେ ଦେଖିଲା—ଗାଁର କେତେ ଭଙ୍ଗା ଗଢ଼ା, କେତେ ପରିବର୍ତ୍ତନ । ଆଗପରି ଗାଁ ଦାଣ୍ଡରେ ଆଉ ପିଲାଏ ଅଣ୍ଟାରେ କାଶତଣ୍ଡି ଫୁଲ ବାନ୍ଧି, ବେକରେ ବାସୀକନିଅର ଫୁଲମାଳ ପକାଇ ନାଚୁ ନାହାନ୍ତି । କେତୋଟି ଘର ଭାଙ୍ଗି ଉଧେ ପଡ଼ିଛି । ପୁରୁଣା ପୁରୁଣା ବୁଢ଼ା ବୁଢ଼ୀ କେତେ ଜଣ ମରିହଜି ଗଲେଣି । ଆଗପରି ଆଉ ଗାଁ ଦାଣ୍ଡ ଧୂ ଧୂ ଦମ୍ଭ ନାହିଁ । ଭାରି ନିଛାଟିଆ ।

ଘରେ ପହଞ୍ଚି, ତହୁଁ ଆରଦିନ ସକାଳୁ ଦଉଡ଼ି ଗଲା ଜଳବାରି ଲେମ୍ବୁ ଗଛ ମୂଳକୁ । ଯେଉଁଠି ଏତୁଟି ଦିନରୁ ନାଚି କୁଦି ଆସିଥିଲା । କନକ ସାଥିରେ ଲେମ୍ବୁ ତୋଳିବା ପାଇଁ କେତେ ମାଲଗୋଳ କରି, ପୁଣି ତାକୁ ଅଣ୍ଟିରେ ଅଣ୍ଟିଏ ପାକଳା ଲେମ୍ବୁ ଦେଇ ମନ ଭୁଲାଇ ଥିଲା । ସେଇଠି ଯାହା ଦେଖିଲା, ସେଥିରେ

ଲୁଅ ଭରା ତା' ଆଖିରୁ ଦୁ'ଧାର ଲୁହ ଗଡ଼ି ପଡ଼ୁଛି । ଯେଉଁ କେତେ ମୂଳ ସପା ସୁତୁରା ହୋଇ ନଡ଼ାପୋଷ୍ଟ ହେଲାପରେ ଦେଖା ଯାଉଥିଲା, ସେଠିଆକ ବଢୁଅଛି ଘାସ, ଅରମା । ବଲୁଆକୁକୁରଙ୍କ ଗୁହ୍ଳରେ ପୂର ଯାଉଛି ।

ତାର ଅଡ଼ ପିଲା ଦିନର ସାଙ୍ଗ ଗୋପୀ ପଟାନ ଝିଅ କନକ ଆଜ ସେଠି ନେଇ ନାହିଁ । ଛଳ ଛଳ ଆଖିରେ ସେ ଉପରକୁ ଅନାଇଲା, ଜାନ ତାକୁ ଚିହ୍ନିଲା କିନ୍ତୁ ନୂଆ ପତରଗୁଡ଼ିକ ତେଣୁ ଚିହ୍ନି ପାରିଲେ ନାହିଁ । ନିଜ ନିଜ ଭିତରେ ମୁଣ୍ଡ ହଲାହଲି ହୋଇ କଥାଭାଷା ହେଲେ, ଏଇଟି କିଏ ! କାହିଁକି ଆମକୁ ଚାହୁଁଛି । ହାଲ ତାଙ୍କୁ ନୀରବ ଭାଷାରେ ବୁଝାଇଲା, ସ୍ମୃର କଥା ନେଲା, ମୁଁ ତମକୁ ଭେଟିବାର ଚାହୁଁଛି । ସ୍ମୃ'ନେଲାଗି, କନକ ଲାଗି ମୋ ମୂଳ ଦେବତାଥାନ ହୋଇଥିଲା । ଏ ଯେଉଁଦିନ ପରିବ'କୁ ଗଲା, କନକ ଅଜ୍ଞ ମନ ଦୁଃଖରେ ଏଠିକୁ ଆସିଲା ନାହିଁ । ସେଇ ଦିନଠୁଁ ମୋ ମୂଳ ଏମିତି ପଡ଼ୁଛି । ତାର ଭିତରୁ କୋଇଲିଟା କେଉଁଠି ଝିର ଛଳରେ କହିଲା ତମକୁ ଦେଖିବା ପାଇଁ ମୁଁ ନିତି ଏଠିକି ଆସେ । ଅନାଇଁ ଅନାଇଁ ଆଖିରୁ ପାଣି ମରେ, ତମକୁ ପାଏନା, କି କନକକୁ ପାଏନା । ହତାଶରେ ଫେରେ ।

ରାଜକିଶୋର କାହା କଥା କିଛି ବୁଝି ପାରିଲା ନାହିଁ । ଗୁରଅଡ଼କୁ ଚୁଣି ଦି'ଥର ଅନାଇଁ, ମୁହଁ ଫେରାଇଲା ଘରଆଡ଼କୁ; କନକ ଉପରେ ତାର ଭାରି ରାଗ ଅଭିମାନ ହେଲା । ଭାବିଲା ଥରେ ଯାଇଁ ପଚାରିବ, କିଲୋ ଟୋକି ! ସେ ଗଛମୂଳକୁ ଯାଉନୁ କାହିଁକି ? ସେ ଗଛ ମୂଳ କ'ଣ ହେଲାଣି !

ଘଇଲେ ଗୋଟା ବେଳ । ବ୍ରଜକିଶୋର ହଳ ଲୁଗା ଖଣ୍ଡିଏ ପିନ୍ଧି ଗୋପୀ ପ୍ରଧାନ ଘର ଆଡ଼କୁ ବୁଲିବାକୁ ଗଲା । ଘର ଭିତରକୁ ପଶିଯାଇ ଦେଖିଲା—କନକ ହାଣ୍ଡିଶାଳ ପିଣ୍ଡାରେ ବସି ଗଇରୁ ଧାନ ଛଡ଼ାଉଛି । ତା ବୋଉ ଏ ପିଣ୍ଡାରେ ବସି ସାନ ପୁଅକୁ ଖୋଇ ଦେଉଛି । କନକର ଆଖି ଯେମିତି ବ୍ରଜ ଉପରେ ପଡ଼ିଛି ସେମିତି କୁଲାଟାକୁ ଧରି ଲଣ୍ଡଭଣ୍ଡ ହୋଇ ଘରକୁ ପଶିଗଲା । ତା’ ବୋଉ ବ୍ରଜକୁ ଦେଖି କହି ଉଠିଲା—କେଉଁଦିନ ପୁଅ ଅଇଲୁ କରେ ? ତମର ଘର କେମିତି ମନେ ପଡ଼ିଲା ? ପାଠ ପଢ଼ି ତ ହାକିମ ହେବ । ଆମ ଗରିବଙ୍କୁ ପଚାରିବ କିଆଁ ?

ବ୍ରଜ ଟିକିଏ ହସିଲା, କିଛି କହିଲା ନାହିଁ । ତେଣେ ଦୁଃଖ ସୁଖ ହେଲା ପରେ ପଚାରିଲା—କନକ କୁଆଡ଼େ ଗଲା କି ? ତାକୁ ପାଖକୁ ଡାକୁନା । ମୋତେ ଲାଜ କରୁଛି ନା କ’ଣ ?

କନକ ବୋଉ ମୁହଁ ଟିକିଏ ଶୁଖାଇ ପକାଇ କହିଲା—ସେ କଥା କହନାରେ ପୁଅ, ଟିକା କାହାକୁ ହେଉଛି । ଘରେ ରହିବା ଝିଅ । ପୁରୁଷଙ୍କ ପାଖକୁ କେମିତି ଆସିବ । ଏ ଛତରା ଗାଁ କଥା ତ ଜାଣୁ । ତୁଣ୍ଡରେ ବାର ନାଁ ଲଗାଇବେ । ମୋ କଥା ସବୁ ଶିବରେ ପୁଅ ।

ଚୋଟାଏ ଧକ୍କା ଖାଇଲା ପରି ତାକୁ ଲାଗିଲା । ମନଟା ଭୁରି ତୋଳେଇ ଘାଣ୍ଟି ହେଲା ଆକାଶ ପାତାଳ କେତେ କଣ ଦଣ୍ଡକେ ଭାବିଗଲା, ତାର ଠିକଣା ନାହିଁ । ଯନ୍ତ୍ର ଗୁଲିଲା ଧରି ପୁଣି କେତେ ପଦ କଥା ଭଷା ହୋଇ ଘରକୁ ଫେରି ଆସିଲା ନରେ କେତେ କଷ୍ଟ କେତେ ବେଦନା ଧରି ।

"କିଏ ଜାଣେ କନକର ସେ ଲୁହ ଛଳଛଳ ଆଖିରେ କବାଟ ଫାଙ୍କରେ ତାକୁ ଅନାଇଁ ନ ଥିବ।"

ଦିନପରେ ଦିନ ଗଡ଼ିଲା। ରାଜର ମନରେ ଆଉ ସୁଖ ନ ଥାଏ। ସବୁବେଳେ ଭାବୁଥାଏ ଯାହାହେଲା ହେଲା, କନକ ସଙ୍ଗରେ ଦି'ପଦ କଥା କଣ କେଉଁଠି କହିପାରିବ ନାହିଁ ? ଶଠି ଲେଖି ତା' ପାଖକୁ ଦିଅନ୍ତା--ସେ କ'ଣ ପାଠ ପଢ଼ିଛି ଯେ ପଢ଼ିବ।

ରାଜର ପିଲାଦିନୁ ବଣପି ପକ୍ଷୀଧରିବାରେ ଭାରି ଦକ୍ଷ। ଦିନେ ଖରାବେଳେ ବଣସ୍ତି ଧରି ବାହାରି ପଡ଼ିଲା କେନ୍ଦୁଗଛ ଅରପାଖି କହିଁ ପୋଖରୀକୁ। ଗୁହରିଆଡ଼ ନିଶୂନ--ପାଖରେ କେହି ମଣିଷ ନାହିଁ। ତୁଠ ଉପରକୁ ଯାଇ ଦେଖିଲା, କନକ ଅନ୍ଧେଲାଣ୍ଟାରେ ହଳଦୀ ଲଗାଇ ଗାଧୋଉଛି। ପଛଆଡ଼କୁ ତାର ଲକ୍ଷ୍ୟ ନାହିଁ।

ରାଜ ଭୟ ଆଉ ଆନନ୍ଦରେ ଥିର ହୋଇ ତାର ଅଡ଼କୁ ଚାହିଁ ରହିଲା। ପିଲାଦିନର କନକ ଆଉ କନକ ହୋଇ ନାହିଁ। ଦେହ ମୂଣ୍ଡରେ ଟକଟକ ଉପାର। ବାଳ ଅଣ୍ଟାକୁ ଲମ୍ବି ପଡ଼ିଛି କେଡେ ସୁନ୍ଦର। ରାଜୁ ଆଉ ଚୁପ ହୋଇ ରହି ପାରିଲା ନାହିଁ। ଡାକିଲା--'କନକ' ? କନକ ଚମକି ପଡ଼ି ଅନାଇଲା--ରାଜୁଭାଇ; ବାଧ ହାବୁଡ଼ରେ ହରିଣ ପଡ଼ି ଗଲାପରି କନକ ଗୋଟିପଣ ଥରି ଥରି ଓଦା ଲୁଗାଟାକୁ ଭଲକରି ଦେହ ମୂଣ୍ଡରେ ଜଡ଼ାଇଁ ହଳଦୀ କାଠୁଆଟା ଧରି ପଳାଇ ଯିବାକୁ ବସିଲା। ରାଜ ତା' ଆଗରେ ଠିଆ ହୋଇ ପୁଣି ଡାକିଲା--କନକ, ମୋତେ ତୁ କଥା କହିବୁନୁ ? କନକ--ବରଡ଼ା ପତରପରି ଗୋଟିପଣ ଥରୁଥାଏ, ଆଉ ସର-ମରେ ମୂଣ୍ଡ ତଳକୁ ମାଡ଼ି ଗଳିଯିବାର ବାଟ ଖୋଜୁଥାଏ। ରାଜୁ ଦାଣ୍ଡି ଅପେକ୍ଷା କରି ତା' ମୂଣ୍ଡଟିକୁ ଟେକି ଦେବାକୁ ହାତ

ନେଉଥିଲା, କନକ ପଛକୁ ଘୁଞ୍ଚିଯାଇ ଥରଥର କହିଲା—ରାଜୁଭାଇ ତମେ ଚାଲିଯାଅ । ମତେ ଆଉ ଛୁଅନା, ମୁଁ ଚାଲିଯାଏ । ତମ ଗୋଡ଼ ତଳେ ଦେଉଛି, ମତେ ହଟହଟା କରନା । କିଏ ଜାଣେ ?

ରାଜୁ କହିଲା—ମୁଣ୍ଡ ଟେକି ମୋତେ ଅନା, ମୁଁ ତୋତେ କଥା ପଚାରେ କହିବା ପାଇଁ କେତେ ଖୋଜୁଛି, କେତେ ଆଖିରୁ ଲୁହ ଗଡ଼ାଉଛି . ତୁ କଅଣ ବୁଝି ପାରୁନୁ । ପିଲାଦିନର ସବୁ କଥା ଭୁଲିଗଲୁ ?

କନକ ମୁଣ୍ଡ ଟେକି ତା' ଆଡ଼କୁ ଚାହିଁଲା ନାହିଁ । ତା' ଆଖିରୁ ଦ' ଧାର ଲୁହ ମାଟିରେ ପଡ଼ି ଶୁଖି ଯିବାର ରାଜୁ ଦେଖିଲା । ତା'ର ମନ ଅଉ ଥୟ ହେଲାନି, ମୁଣ୍ଡ ଟେକି, ମୁହଁ ଦେଖିବାକୁ ଯାଉଥିଲା— କନକ ପୁଣି ଘୁଞ୍ଚିଯାଇ ଥର ଥର ଗଳାରେ କହିଲା, ମତେ, ଆଉ ଛୁଅନା ! କଥା କହିଲେ କେଉଁ ସୁଖ ଅଛି ? ସବୁ ପଛ କଥା ଭୁଲିଯା' । ଗୋଡ଼ତଳେ ପଡ଼ୁଛି, ମତେ ଛାଡ଼ିଦିଅ—

ଦୋ' ମହଲା ଉପରୁ ହାରମୋନିଅମ ବାଜି ଉଠିଲା ତା' ପରେ ପରେ ତରୁଣୀ କଣ୍ଠର ସୁମଧୁର ଗୀତ—

"ଗଲାଣିତ ଗଲା କଥାରେ ସଙ୍ଗାତ
ଗଲାଣିତ ଚଲା କଥା,
ଗୁପତେ ସିନା ମୁଁ ତୋତେ ପଚାରିଲି
ଭଲି ପଡ଼ିବାରୁ ବ୍ୟଥା ରେ—"

ରାଜୁର ଭାବନା ଗୋଳମାଳ ହୋଇଗଲା । ଉପରକୁ ଅନାଇଛି, ଯେମିତି ଆଉ କିଛି ଶୁଣିଲା ନାହିଁ । ଦେହଟା ଶୁନଶାନ ଲାଗୁଛି, ଛାତିଟା ଦପ୍ ଦପ୍ । କଅଣ ଗୁଡ଼ା ଭାବୁଛି କହୁ—ଗୋଟି ଅଟେଓ ମନ ଦେଲା । ଚାକରଟି ଡାକିଲା—ବାବୁ, ସବୁ ସରିଲାଣି, ଖାଇବେ, ନା' ଟିକିଏ ଯିବ ଅଉ ?

ନାଁ, ଟିକିଏ ରହ ।

ଗୀତ ବୋଲା ସରିଲା, ଟେକେଡ଼େ ଦରଦ ସ୍ୱର । ସୁକୁମାରର ଲାଗିଲା, ଯେ ଗୀତ ବୋଲୁଛି, ତା' ଆଗରେ ଥରେ ବସିବାକୁ ଯଦି ସେ ସୁବିଧା ପାଆନ୍ତା— । ପୁଣି ମନକୁ ମନ ଭାବିଲା—ଛି ସେ ବଡ଼ ଦୁର୍ବଳ ହୋଇ ପଡ଼ିଲାଣି । ପରହିଂଅ, କାହା କଥା ଭାବୁଛି ! ତାର ଉଚ୍ଛଳ ମନ ବିବେକର କଥା ମାନିଲା ନାହିଁ । ପୁଣି ଭାବିଲା—ତଟ୍ଟୁଣୀଟି ହାରମୋନିଅମ ବଜାନ୍ତା, ଆଉ ସେ ତା' ର ଆଗରେ ବସି ଦେଖନ୍ତା, ତାର ମୁଖଭଙ୍ଗୀ, ତାର ହସ ହସ ମୁହଁ । ସେତେବେଳେ ସେ ନିଜକୁ ଭୁଲି ଯାଆନ୍ତା—ଦୁନିଆକୁ ଭୁଲି ଯାଆନ୍ତା, କିନ୍ତୁ କାହିଁ ସେ ସୁଯୋଗ—କାହିଁ ସେ ଭାଗ୍ୟ ଅକାଶ କୁସୁମ ତୋଳିବା ଛଡ଼ା ଆଉ କିଛି ନୁହେଁ ।

ପୁଣି ଗୃହର ଟୋକାଟି ଆସି ଡାକିଲା— ବାବୁ ଭାତ ଶୁଖି ଯିବ, ଆସନ୍ତୁ ଖାଇବେ ।

ସୁକ ଭାତଥାଳିରେ ବସିଲା, ଭାବନାର ଶେଷ ନାହିଁ । ସେତେବେଳକୁ ଗୀତ ବୋଲା ବନ୍ଦ ହେଲାଣି ସତ, ଗପସପ ହସ ଖେଳର ଚେଉ ଶେଷ ହୋଇ ନ ଥାଏ । ସୁକର ମନଟା ତାଙ୍କର ପାଖରେ ଖେଳି ବୁଲୁଥାଏ—ଲୁଚି ଲୁଚି । ଯାହତାଇ ଗଣ୍ଡିଏ ଖାଇ, ବିଛଣାରେ ଶୋଇଲା । ଠିକ୍ ସେହି ଭାବନା, ଗୋଟାକ ପରେ ଗୋଟାଏ ଆସି ପୁଣି କୁଆଡ଼େ ମିଳେଇ ଯାଉଥାଏ । ଇମିତ ଭାବୁ ଭାବୁ କେତେବେଳେ ଯେ ତା' ଆଖିକୁ ନିଦ ଆସିଗଲା ସେ ଜାଣି ନାହିଁ ।



ଉହୁଁ ଅବଦନ ରବିବାର । ଖୁଦୁରୁକୁଣୀ ଓଷା । ଝିଅଗୁଡ଼ିକ ସତ ପାହାନ୍ତାରୁ ଉଠି ଫୁଲ ପାଇଁ ଦଉଡ଼ା ଦଉଡ଼ି ହେଉଥାନ୍ତି । ଭିତରରୁ ଚାକରଟୋକାଟି ଦୁଲାଇ ହେଇ କହିଲା—ବାବୁ, ଏ ପଣ୍ଡଶାଘର ବାବୁଙ୍କ ଝିଅ ଆମ ଦୁଆରୁ ଫୁଲ ନେବାକୁ ଆସିଛନ୍ତି, କବାଟ ଫିଟାଇ ଦେବି ? "ପଣ୍ଡଶାଘର ବାବୁଙ୍କ ଝିଅ" ଏ କଥା ଶୁଣି ସରଜର ନିଦଟା ଛଟକରି ଭାଙ୍ଗି ଗଲା । ଉଠ ଉଠ୍ କରି କହିଲା—ଫିଟାଇ ଦେବୁ ଚଞ୍ଚଳ, ମୋତେ କଅଣ ପଚାରୁଛୁ ? ଚାକର ଟୋକାଟି ଦୌଡ଼ି ଯାଇଁ କବାଟ ଫିଟାଇ ଦେଲା ।

ବାବୁଙ୍କ ସାନ ଝିଅ । ବୟସ ବାର କି ତେର । ଗୋଲ ଢଳଢଳ ମୁହଁଟି । ସାରୁପତରରେ ପାଣି ପରି ଆଖି ଯୋଡ଼ିକ ଢଳଢଳ । ଦରଫୁଟା ପଦ୍ମପାଖୁଡ଼ା ପରି ଓଠ ଦିଓଟି ପୂର୍ଣ୍ଣ ଯୌବନ ଆସି ନାହିଁ, କିନ୍ତୁ ଯୌବନର ପ୍ରଥମ ମଳୟ ସ୍ପର୍ଶ ଲାଗି ଦେହ ମୁଣ୍ଡରେ ଅଧାଅଧି ପରିବର୍ତ୍ତନ ହୋଇ ଯାଇଛି । ଝିଅ ଟିକିଏ ସଙ୍କୋଚ ପାଇଲା ପରି ଗଛ ମୂଳକୁ ଗଲା ଉପରେ ଡାଳକୁ ଗୋଟିକ ପରେ ଗୋଟିଏ ନୁଆଁଇ ଫୁଲ ତୋଳୁଥାଏ । ସରୋଜ-କିଶୋରମୁହଁଟାକୁ ଧୋଇ, ମୁଣ୍ଡଟାକୁ ଟିକିଏ ବାଗେଇ ନେଇ, ଦୁଆରକୁ ଆସି କହିଲା—କିଏ ରେ ସଢଆ ? ତୁ କ'ଣ କରୁଛୁ କି ? ଫୁଲ ଦ'ଠା ଛେଳି ହେଉନୁ ।

ଝିଅଟି ଦ'ଥର ତା' ମୁହଁକୁ ଅନାଇଁ ପୁଣି ଫୁଲ ତୋଳି-ବାରେ ଲାଗିଗଲା । ରାଜ ମନ ହେଉଥାଏ ଝିଅଟିକୁ ପାଖକୁ ଡାକି କେତେକ କଥା ପଚାରନ୍ତା, କିନ୍ତୁ ସାହସ ହେଉ ନ ଥାଏ । ତା' ଜୀବନରେ କନକ ଛଡ଼ା ସେ କାହାକୁ କେବେ ପଦେ ପାଟି ଫିଟାଇ କଥା କହି ନାହିଁ । ସେ ପୁଣି କେତେ ଦିନର କଥା ।

ଇମିତି ଭାବି ଭାବି ଦାନ୍ତକାଠିଟା ଧରି ଦୁଆର ପିଣ୍ଡାରେ ଆସି ବସିଲା । ହଠାତ୍ ଉପର ମହଲାର ବରଣ୍ଡାର ବାଡ଼ ଧରି ଆଉ ଗୋଟିଏ ତରୁଣୀ କହିଲା—କିଲୋ ! ତୋର ଫୁଲ ତୋଳା ସରୁନାହିଁ କି ? ଘଣ୍ଟାଏ ହେଲା ତୋଳୁଚୁ ନା ? ଏ ଝିଅଟି ଉତ୍ତର ଦେଲା—ତୁ ଆସି ତୋଳୁନୁ । ମୁଁ ଏତେ ଫୁଲ କେମିତି ଏକେଲା ତୋଳିବି । ରାଜୁ ଅନାଇଁ ଦେଲା ଉପରକୁ, ତରୁଣୀଟିର ଆଖି ସଙ୍ଗରେ ତାର ଆଖି ମିଳିଗଲା । ଆଖି ପଲକରେ ସେ ନିଜ ଆଖିକୁ ତଳକୁ ଫେରାଇ ଆଣିଲା, କିନ୍ତୁ ଆଖି ତାର ବୋଲ ମାନିଲା ନାହିଁ । ପୁଣି କଟେଇ ଚାହିଁଲା ତରୁଣୀଟି ଦ'ହାତରେ ବରଣ୍ଡା ବାଡ଼କୁ ଧରି ଇଆଡ଼କୁ ଅନାଇଁଛି । କେତେବେଳେ ପରେ ତରୁଣୀଟି ଘରକୁ ଚାଲିଗଲା । ରାଜ ଦୁଆରୁ ଶୋଇବା ଘର ଖଟ ଉପରକୁ ଉଠି ଆସିଲା ।

ଫୁଲତୋଳା ଶେଷ ହେଲା ବେଳକୁ ରାଜ ବଡ ସାହସ ବାନ୍ଧି ଡାକିଲା—ଇଆଡ଼କୁ ଆ ଠ ?

ଝିଅଟି ଫୁଲ ଗୁଛଡ଼ାକୁ ଦୁଆର ପିଣ୍ଡାରେ ରଖି ଦେଇ ବଡ଼ ଫାଟକଟରେ ଘର ଭିତରକୁ ଗଲା । ରାଜ ଉଠିଯାଇ ତାର ହାତ ଧରି ପାଖକୁ ନେଇ ଯାଇଁ କହିଲା—ତମ ନାଁ କ'ଣ ?

"ମୋ ନା'—ଆଶା" । ଏତେ ଭୁଲ୍ କଣ କରିବ ? ଆଶା ଟିକାଏ ହସି କହିଲା—ଆମର ଘର ଅଙ୍ଗ ଉପା, ଆମେ ଠାକୁର କରିବୁ । ରାଜୁର ମନ ହେଉ ଥାଏ—ତାକୁ ବୋଲ ଉପରକୁ ଟାଣି ନେଇ, ତାଙ୍କ ଘର କଥା କେତେ ପଚାରନ୍ତା । କିନ୍ତୁ ତା ଜିଭ ଗୋଟାଏ ଅକ୍ଷରରେ ଲେଉଟିଲା ନାହିଁ । ଝିଅଟି କହିଲା ମୁଁ ଯାଉଛି, ଅପା ଡ଼ାକିଲାଣି । ରାଜକୁ ଗୋଟାଏ କହିବାର ଫାଙ୍କ ମିଳିଲା—"ତମ ଅପାଙ୍କ ନା କ'ଣ" ? "କେଉଁ ଅପା ? ଯିଏ ମୋତେ ଡ଼ାକୁଥିଲା ? ତା' ନା ସୁରମା" । ରାଜ ଆଉ ଅନ୍ୟ ଭଉଣୀଙ୍କ ନାମ ପଚାରିବାକୁ ଯାଉଥିଲା, ପଚାରି ପାରିଲା ନାହିଁ । ଝିଅଟିର ତରତର ହେଲା ଯିବାକୁ । ରାଜ କହିଲା, ତମେ କେଉଁଠି ପଢ଼ ? "ମୁଁ ଆଉ ଯେଉଁ ଅପା ମୋତେ ଡ଼ାକୁଥିଲା, ସେ, ଗାର୍ଲସ୍କୁଲରେ ପଢ଼ୁ । ଅପା ବେଶି ବଡ଼ିଲାଣି, ମୁଁ ମାଇନର ସେକେଣ୍ଡ କିଲାସରେ ପଢ଼ୁଛି" । ରାଜୁ ତା' ପିଠିରେ ହାତମାରି କହିଲା—ବେଶ, 'ଯା' ଅପା ଗାଳିଦେବ; ପଛକୁ ଆସିବ । ଅଙ୍ଗା ମୁଣ୍ଡ ହଲାଇ କହିଲା—ତମେତ ଆମେ ଘରେ ନ ଥାଅ । ଅପା କେତେ ଥର ଫୁଲ ଆଣିବାକୁ ପଠାଏ, ମୁଁ କବାଟ ବନ୍ଦ ଦେଖି ଫେରି ଯାଏ । ଯାଉଛି ମୁଁ ପଛକୁ ଆସିବ, ଆଶା ଗୁଲିଗଲା । ରାଜକିଶୋର ଖଟ ଉପରେ ବସି କିଛି ସମୟ କେତେ କଣ ଭାବି ଅଶାର ଦେଉଳ ଚଢ଼ିଲା । ତା'ପରେ ଜଳଖିଆ ଗଣ୍ଡେ ଖାଇ ବାହାରି ଗଲା କଲେଜର ଅଡ଼େ ଟିକିଏ ବୁଲି ଆସିବାକୁ ।

ସେହିଦିନଠାରୁ ଆଶା ପ୍ରତିଦିନ ଫୁଲ ତୋଳିବାକୁ ଆସେ । ସୁରମା ପ୍ରତିଦିନ ବରଣ୍ଡାରେ ଏ ପାଖକୁ ଅନାଇଁ ମିଛି ମୁଛିକ କେତେ କଥା ତାକୁ ପଚାରି ହୁଏ । କିନ୍ତୁ ରାଜ ଆଖି

ସାଙ୍ଗରେ ତାର ଆଖି ମିଳେ, ଆଖିର ଆଖି ଚିହ୍ନା ପରିଚୟ ହୁଏ । କେହି ତାହାକୁ ପାଟି ଫିଟାଇ ପଦୁଟିଏ କଥାବାର୍ତ୍ତା କରନ୍ତି ନାହିଁ ।

ରାଜକିଶୋର ରାତି ଦିନ କେତେ କଥା ଭାବି ଠିକ କରି ଥାଏ, କାଲି ସକାଳେ କିଛି ନା କିଛି ପଚାରି ଦେବ, କିନ୍ତୁ ସକାଳେ ଦେଖା ହେଲେ ଆଉ ପାଟି ଫିଟେନା । ଆଖିର ଆଖି ଭିତରେ, ସ୍ୱାଙ୍କ ଅଜାଣତରେ କଥାବାର୍ତ୍ତା ହୁଅନ୍ତି । ମନ ସଙ୍ଗରେ ମନ ଦିନକୁଦିନ ଘନିଷ୍ଠତା ବାନ୍ଧେ । କିନ୍ତୁ ତାହାର ପାଟି ଫିଟେ ନାହିଁ ।

ଆଶା ଆଜି ରାଜ ପାଖରେ ଏବେ ସଙ୍କୋଚ କରେ ନାହିଁ । ଦିନ ଭିତରେ ଦୁଇ ତିନିଥର ଆସି ତା' ସଙ୍ଗରେ ଗୋଳମାଳ କେତେ ଅଣ୍ଟା ପରିହାସ ଲଗାଏ । ରାଜକି ତାକୁ କୋଡ଼ରେ ବସାଇ କେତେ କଥା ପଚାରେ, କେବେ କେବେ ଗେଲରେ ମାଡ଼ ଦିଏ । ଆଶା ତାକୁ ବି ସେମିତି ମାରେ । ଇମିତି ଦିନପରେ ଦିନ ଗଡ଼ିଯାଏ ।

ଦିନେ ରାଜକିଶୋର କଲେଜରୁ ଫେରି କହିଲା — ସତିଆ । ବଛଣା ଟିକିଏ ଝାଡ଼ିଦେଲୁ, ଦେହଟା କାହିଁକି ଜରଜର ଲାଗୁଛି । ସତିଆ ବଛଣାଟି ଝାଡ଼ି, ଭଲ ସୁନ୍ଦର ଖଟଣ୍ଡ ପାରି ଦେଲା । ରାଜ ଶୋଇ ଘୋଡ଼ାଇ ହୋଇ ପଡ଼ିଲା । ଆଶା ସ୍କୁଲରୁ ଫେରି ଫୁଲ ନେବା ପାଇଁ ଦଉଡ଼ି ଆସି ରାଜ ଘରକୁ ପଶିଯାଇ ଡାକିଲା — କିହୋ ରାଜୁଭାଇ ? ଶୋଇଚ କାହିଁକି ? ତମ ଦେହ କଣ ହୋଇଚି କି ? ଏହା କହି ତା ମୁଣ୍ଡ ପାଖରେ ବସିପଡ଼ି ମୁଣ୍ଡରେ ହାତ ଦେଇ କହିଲା — ତମକୁ ଜର ହେଇଛି ! ଔଷଧ

କ'ଣ ଖାଇବ ? ରାଜୁ ତା ପିଠିରେ ହାତ ବୁଲାଇ କହିଲା—ନା ନେ, ସେମିତି କିଛି ଡର ନୁହେଁ—ସାମାନ୍ୟ ଟିକିଏ ଜର । ପଧବଟା ଆଜି ବାହୁଁକି ଭଲ ଲାଗୁ ନାହିଁ । ଅଣା ଟିକିଏ ତା ମୁଣ୍ଡକୁ ଚିପି ଦେଇ କହିଲା—ମୁଁ କିଛି ଖାଇବାକୁ ଯାଉଛି ରାଜୁଭାଇ ! ତିନେ ଥା, ମୁଁ ଅଜ ଟିକିଏ ଗଲେ ଆସିବି ଯେ । ଅଣା ଚାଲିଗଲା । ରାଜୁ ବିଛଣାରେ ପଡ଼ି ଏପାଖ ସେପାଖ ହେଉଥାଏ ।

ସନ୍ଧ୍ୟା ହେଲା । ବାବୁଙ୍କ ଘରେ ବିଜୁଳି ଆଲୁଅ ଏ ଅଗଣାରେ ବିଛୁଡ଼ି ହୋଇ ପଡ଼ିଲା । ପଇଅ ଲନଠଣଟି ଲଗାଇ ଟେବୁଲ ଉପରେ ରଖି, ପଚାରିଲା—କଣ ଖାଇବେ ବାବୁ ? ସାଗୁ ନା, ବାର୍ଲି ?

ରାଜୁ ବରନେଉଁଥାଇ କହିଲା—ଇଚ୍ଛା ତ ଜମାରୁ ନାହିଁ । ଦେବେ ସାଗୁ ଟିକିଏ କରିଥା' । ବଜାରରୁ ଗଲ୍ ସୋଡା ଦିଟା ଆଣିବୁ ? ଲନ୍ଠଣଟା କମାଇ ଦେଇ ଯା । ପଇଅ ଲନଠଣଟି କମାଇ ବଜାରକୁ ଚାଲିଗଲା ।

ଘରଟି ଶୂନଶାନ । ନାଲି ଲନ୍ଠଣ ଆଲୁଅଟି ଦବ୍ ଦବ ହୋଇ ଜଳୁଛି । ଟେବୁଲ ଉପରେ ଘଣ୍ଟାଟି ଟିକ୍ ଟିକ୍ ହୋଇ ଭାଷାରେ କ'ଣ କହି ଚାଲିଛି । ରାଜୁ ଚାହିଁଛି ଉପରକୁ କଡ଼ି ଡ଼ାକୁ, ଆଖି ପଲକ ପଡ଼ୁ ନାହିଁ । ମନ ଭିତରେ ଭାବନାର ଡ଼ ତୋଫାନ, ଇମିତି ଭାବୁ ଭାବୁ ଦେଖେଇବେଳେ ଉପର କାଡ଼ ଡ଼ା ଛା' ଅଚେନ୍ ବଦଳି ଯାଇ ଗୋଟାଏ ବଡ଼ ବାରଣ୍ଡା ଲଟି ଯାଉଛି, ଆଉ ଛା' ପାଖରେ ଠିଆ ହୋଇଛି ସୁରମା । ଦିନ ସୁରମା ପରି ଆଉ ସେ ଠିଆ ହୋଇ ନାହିଁ । ମୁହଁଟି ଶୁଖି

ଯାଇଛି; ଝଠ ଦ ଝଠି ଥର ଥର, ଆଖି ଯୋଡ଼କ ଘୂର୍ଣ୍ଣନ୍ତ, ମିନତିର ତରୁଣ ଗୃହାଣି । ବାଳଗୁଚ୍ଛକ ଫିଙ୍ଗୁ ଅ ହୋଇ ଯାଇଛି । ତା ଭିତରୁ କେତୋଟି ବାଳ ଫୁଲ୍ଲ ଫୁଲ୍ଲ ଅ ପବନରେ ନାଚୁଛି ଅ ପର ଏଣେ ତେଣେ ଖେଳ ବୁଲୁଛି ।

ସ୍ନା' ଆଖି ତା ଆଖି ମିଳ ଯାଉଛି । ବାହେଁ ଦୁହିଙ୍କ କୁହା କୁହି ହେଉଛନ୍ତି—କେତେଦିନ ଆଉ ଇମିତ ଆଖିର ଦେଖାରେ ଆମ ଦିନ କଟିବ । ଅନ୍ତରର କୁହୁଳିଲା ନିଆଁକୁ ଲିଭାଇ ହେଉନାହିଁ, ଖାଲି ହେଉଛି— ଫୁଙ୍କି ଫୁଙ୍କି ଜଳାଇବା । ପୁଣି ରାଜ ଦେଖିଲା--ପବନରେ ସୁରମାର ଦେହରୁ ଟିକିଏ ଲୁଗା ଖସିଗଲା, ଝଠ ଦ ଝଠି ଥର ଥର ହୋଇ ଥର ଉଠିଲା । ଆଖିରୁ ଦ ଚୋପି ମୁକୁତା ପରି ଲୁହ ତଳେ ଝରି ପଡ଼ିଲା । ଆଉ ସେ ଥୟ ହୋଇ ପାରିଲା ନାହିଁ; ଦେହରୁ ଚଦରଟା କାଢ଼ି ପକାଇ ଡାକିଲା—ସୁରମା ? ଏଇଥିପାଇଁ କାନ୍ଦୁଛ ? ହଠାତ୍ ଚେତ ଆସିଲା, ମୁଣ୍ଡଟା ଭିର ଭିର ଲାଗୁଛି, ଛାତିଟା ଦପ୍ ଦପ୍ ହୋଇ ଉଠୁଛି ପଡ଼ୁଛି । ଉପରକୁ ଅନାଇଲା, ବରଣ୍ଡା ନାହିଁ କି ସୁରମା ନାହିଁ । ଯେଉଁ ଖାଟର ବଡ଼ିକୁ ସେହି ଖାଟର ବାଉ ।

ରାଜୁ ଭାବିଲା—ମୁଣ୍ଡ ବୋଧହୁଏ ଖାଲି ଖରାପ ହୋଇ ଯାଇଛି । ବାହାରକୁ ଅନାଇ ଡାକିଲା—ସତିଆ ! ସତିଆ ! କିନ୍ତୁ ଉତ୍ତର ପାଇଲା ନାହିଁ । ସତିଆ ସେତେବେଳକୁ ବଜାରରୁ ଫେରି ନ ଥାଏ । ପୁଣି କଡ଼େଇ ହୋଇ ଶୋଇ ଲଣ୍ଠଣ ଆଡ଼କୁ ଅନାଇ ବସିଲା । ଶୋଷ ଭାରି ହେଉଥାଏ ।

କବାଟ ଖଡ଼ ଖଡ଼ ହେଲା । ରାଜ ଭାବିଲା-ସତିଆ ବୋଧ ହୁଏ ଆସିଲା । କିନ୍ତୁ ସତିଆ ନୁହେଁ, ଅଶା । ରୁମାଲ ଖୋଲାଇ

ଟୋପି ଏ ଥାଳୀଅଙ୍କୁ ଟେବୁଲ୍ ଉପରେ ରଖି ଦେଇ କହିଲା—ରାଜୁ ଭାଇ ଜର କ'ଣ ବେଶି ହେଲା ? ଉଦେମ ଆଜି ରାତରେ ଭାତ ଖାଅ ନାହିଁ । ଏ ଅଙ୍ଗୁର, ବେଦନା ଖାଇ ଶୋଇ ପଡ଼ । କାଲିକି ଜର ଭଲ ହୋଇ ଯିବ ଯେ । ଏହା କହି ମୁଣ୍ଡ ଟିପି ଦେବାକୁ ଲଗିଲା ।

ଆମ୍ବାର ଚୋଟ୍ଟା ଛଅଁଳ ଥନ୍ତା ହାତ ତାଙ୍କ ରାଜୁକୁ ଠିକ ଏଭଳି ଲଗୁଥାଏ । ସେ ଅଶା ପିଟିରେ ହାତ ବୁଲଉ ବୁଲଉ ପଚାରିଲା—ତୁ ଏ ସବୁ କେଉଁଠୁ ଆଣିଲୁ ନଲ ?

"ଅପା ପରା ମୋତେ ସଜାଡ଼ି ଦେଲା । କହିଲା—ରାଜୁ ବାବୁଙ୍କୁ—ଦେବୁ, କହିବୁ—ଭାତ ଅଜ ଖାଇବେ ନାହିଁ ।"

—କେଉଁ ଅପା ନଲ ?

କେଉଁ ଅପା ଦେଲା ତମର କଣ ଗଲା । ସୁରମା ଅପା ପରା । ମୁଁ ଫୁଲ ତୋଳିଲାବେଳେ ଯିଏ ମୋତେ ଗୁହେଁ—ସେଇ ।

"ସୁରମାଅପା ଦେଇଛି" ଏଇ କଥା ପଦକ ଅଶାଠାରୁ ଶୁଣିଲା ବେଳକୁ ରାଜ ମନରେ ଯେ କେତେ ଆନନ୍ଦ ହେଲା, ଆଶାରେ କେତେ ଯେ ସୁନା,-ରୁପା, ମଣି-ମାଣିକ୍ୟର ଦେଉଳ ଗଢିଲା ତାର ଠିକଣା ନାହିଁ । ପୁଣି ହସ ହସ ମୁହଁରେ ପଚାରିଲା ଅଶା, ତୋ ବୋଉ, ଉଷା ଅପା ହେଉଛି ଜାଣିଛନ୍ତି ?

ଅଶା ଆଖି ଖୋସି ଦେଇ କହିଲା—ଇଲେ ବୋଉ ନେ । ଉଷା ଅପା ଜାଣିଲେ—ସୁରମାଅପାକୁ ଆଉ ରଖିବନା ! କେତେ ଗାଳି ଦେବ—ବୋଉ ଆଗରେ କହିଦେବ । ସୁରମାଅପା ପରା ରବତେ କଷ୍ଟରେ ଲୁଚାଇ ମୋତେ ଦେଲା, କେହି ଜମା ଜାଣି ନାହାନ୍ତି । ସୁରମାଅପାକୁ ମୁଁ ଭାରି ଭଲ ପାଏ, ଦେଇଥିବାଇଁ ତା

ବୋଲ ମାନ ଆଣିଲ ନା' । ତମେ କାହାକୁ କହୁଛ ବାହାର ନାଇଁ, ମୁଁ ମାଡ଼ ଖାଇବ । ମୁଁ ଯାଉଛୁ ସଜୁ ଭାଇ, ମାଷ୍ଟର ଏବେଷିଣ ଆସିବେ ।

ସଜୁ ତା' ହାତକୁ ଶପିଧର ମୁହଁ ପାଖରେ ଲଗାଇ କହିଲା—ଯା' କାଲି ସକାଳେ ଆସିବୁ । ଆଶା ଥିବ ଥିବ ଚାଲିଗଲା । ସଞ୍ଜ ବି ସେତେବେଳେ ପହଞ୍ଚି କହିଲା – ବାବୁ, ମେଡ଼ିକେଲ ସୋଡ଼ା ଖୋଜି ଖୋଜି ଥକିଲି । ବାଲୁବଜାରରେ ଯାଇଁ ମିଳିଲା ।

ହଉ, ଦେ ଗୋଟାଏ ଖୋଲି ।

ଥାନା ଘଣ୍ଟାରେ ଠନ୍ ଠନ୍ କରି ବାରଟା ବାଜିଲା । ତଥାପି ସଜୁ ଆଖିକୁ ନିଦ ଆସିଲା ନାହିଁ । ଭାବନାର ସୀମା ନାହିଁ— କେତେ ଭଙ୍ଗା ଗଢ଼ା, କେତେ ଆଶାର ସୁରମ୍ୟ ଦେଉଳ । ଗୋଟାଏ ବାଜିଲା, ଦୁଇଟା ବାଜିଲା ତଥାପି ତା' ଆଖିକୁ ନିଦ ଆସିଲା ନାହିଁ । ତା' କାନ ପାଖରେ ଖାଲି ଶୁଭିଲା—"ସୁରମା ଅପା ଦେଇଛୁ । କେହି ଜାଣି ନାହାନ୍ତି । ତମେ ଆଜି ଭାତ ଖାଇବ ନାହିଁ—ଅପା କହୁଛି ।"

× × × ×

ତହିଁ ଆର ଦିନ ସକାଳୁ ସଜ ବିଛଣାରୁ ଉଠି ନାହିଁ ଆଶା ଆସି କହିଲା—ସଜୁଭାଇ, ଦେହ କିମିତ ଅଛି, ଅପା ପଚାରିଲା । ତମ ପାଇଁ ସେ କାଲି ହିତପାଡ ଭାରି ବ୍ୟସ୍ତ । ଦୁଇ ତିନି ଥର ବାରଣ୍ଡାରେ ଅନାଇଲା—ତମେ ଭାତେଲ ବାହାରକୁ ଉଠିଥିବ ବୋଲି, କାହାକୁ ପାଇଲା ନାହିଁ । ତମେ ଚଢ଼ିଲ କ'ଣ କୁହ, ମୁଁ

ଯିବ ଆଉ ତମ ପାଇଁ ଫଳ ଆଣିବ । ଅଶା କହୁଛି—ସେ ଆଉ ସ୍କୁଲକୁ ଯିବ ନାହିଁ, ତା' ମନ ଭାରି କଷ୍ଟ । ମୁଁ ବ ଯିବ ନାହିଁ । ରଜୁଭାଇ, ମନ୍ତ୍ର ଯଦ କଥାଉଚ ବହ, ଅଶା ମନ୍ତ୍ରକଥା ଔଷଧ ଦେଉଥିଲେ ମୁଁ ଅଣିଲି ନାହିଁ ।

ରାଜର ମନ କୃତଜ୍ଞତାରେ ପୂରି ଉଠୁଥାଏ । ମନେ ମନେ ଭାବୁଥାଏ, ତା' ପରି ଗୋଟାଏ ଲୋକକୁ ସୁରମା ଭାବେ କାହିଁକି ? ଦନେତ ଭୁଣ୍ଡ ଫିଟାଇ କଥା ପଦେ କହୁ ନାହିଁ, ତଥାପି ସେ କାହିଁକି ଏତେ ତାକୁ ଭଲପାଏ । ଇମିତ କେତେ କ'ଣ ଭାବ ଗଲା । ଏଇ କେଇଦନ ହେଲା ଯେମିତ ଗୋଟାଏ ଭାବନା ରୋଗ ତାକୁ ଧରିଛି । ଅଶା ହଲାଇ ଦେଇ କହିଲା—ରଜୁଭାଇ, କ'ଣ ଭାବୁଛ, ମୁଁ ଯାଏ ।

ରଜୁ ତାକୁ ଛାତି ଉପରକୁ ଆଉଜେଇ ଆଣି କହିଲା, ଯା' କହିବୁ ମୋ ଦେହ ଭଲ ଅଛି । ଫଳ ମୁଁ କଣି ଅଣିବ ଯେ, ସେ ତାହିଁକି ଏତେ କଷ୍ଟ କରିବେ ।

ଅଶା କହିଲା—ଥାଉ ଥାଉ ତମ ଭଲଲୋକ କଥା, ମୁଁ ଜାଉଛି ।

ଅଶା ଚାଲିଗଲା । ରଜୁ ଭାବୁଥାଏ ଖାଲି ସୁରମା କଥା । ସେ, ସୁରମାର କଏ ? ତା' ପାଇଁ ସେ ତାହିଁକି ଏତେ ବ୍ୟସ୍ତ । ଆଜି ତା ପାଇଁ ସେ ସ୍କୁଲକୁ ଯିବ ନାହିଁ । ସେ ତାର କ'ଣ ଉପକାର କରିବ ! ଇମିତ କେତେ କଣ......

---

Digitized by PPRACHIN, SOA

ଆଜି ଦିନ ଆଉ କାଲିକି ନ ଥାଏ—କେତେ ପରିବର୍ତ୍ତନ ଘଟେ। ନୂଆ ବର୍ଷ ଶୀତ ପରେ ପଛେ ଆସେ ବସନ୍ତ। ଖେଣ୍ଟାଗଛ ଗୁଡ଼ାକ, ବସନ୍ତର ପରଶ ପାଇଁ ଗିନରଙ୍ଗିଆ ଫୁଲପତ୍ରରେ ଭରି ହୁଏ। ପ୍ରକୃତିର ଶୋଭାହାଟ—ନଈ, ପଠା, ଜଙ୍ଗଲ, ପାହାଡ଼ ସବୁ ଚେଇଁ ଉଠେ।

ସେମିତି ରାଜ ଓ ସୁରମାର ଗୁହାଣି ଅଗପର ଅଉ ନାହିଁ। ଆଖିର, ଆଖିର କଥାବାର୍ତ୍ତା ହୁଏ। କେତେ ମନର ଭାବ ସେଇ ବାଟେ ବାହାରେ, ଯେମିତି ସେ ଦୁଇଜଣ ଏକ। ଚକୁଆ ଚକୋଇ ଦିନଯାକ ଏକାଠି ବୁଲି, ସନ୍ଧ୍ୟା ହେଲେ, ନଦୀ ଏ ପାରିରେ ଚକୁଆ, ଅର ପାରିରେ ଚକୋଇ ବିରହରେ ରାତିଟା କଟାଇଲା ପରି ରାଜୁ ରହେ ଏ ପାଖରେ, ସୁରମା ରହେ ସେ ପାଖରେ। କିନ୍ତୁ ମନଟା କେବେ ଛାଡ଼ଛୁଡ଼ି ହୁଏ ନାହିଁ। ଦିନ ରାତି ଚବିଶ ଘଣ୍ଟା ଏକାଠି।

ଆଉ ଦିନଙ୍କର କଥା। ରାତି ବାର। ରାସ୍ତାଘାଟ ବନ୍ଦ ହୋଇ ଗଲଣି। ରାସ୍ତାର ବିଜୁଳି ଆଲୁଅ ଗୁଡ଼ାକ କୁହା ଭିତରେ ଥିର ହୋଇ ଠିଆ ହୋଇ ଥାଆନ୍ତି। ଦଣ୍ଡେ ଅନ୍ତରରେ ମଝିରେ କ୍ଵ ଘୋଡ଼ାଗାଡ଼ିଟା ରାସ୍ତାରେ ନିସ୍ତବ୍ଧତା ରାଜ୍ୟର ପରଦା ଦେଇ ଘଡ଼ ଘଡ଼ ହୋଇ ଚାଲି ଯାଉଥାଏ। ରାଜୁ ବିଛଣାରେ ଏକଲା ସେ କଣ୍ଠ

ହୋଇ, ସୁରମା କଥା ଶୁଣୁଥାଏ—ଆମ ଦିନ ଗୁଡ଼ାକ କ'ଣ ଇମିତ କଟିବ। ପରସ୍ପର ଆଲିଙ୍ଗନ ଚୁମ୍ବନ କ'ଣ ଜୀବନରେ ଘଟିବ ନାହିଁ ! ସେ ବଡ଼ ଦୁର୍ବଳ। ଯଦି ସେ ଥରେ ତାର ଅନ୍ତରର ସବୁ ବ୍ୟଥା ସୁରମା ଆଗରେ ଗୋଟି ଗୋଟି କରି କହନ୍ତା, ସେ କ'ଣ ତାହା ଶୁଣନ୍ତା ନାହିଁ । ସେତ ତାକୁ ଏତେ ଭଲପାଏ। ସେ ନିଶ୍ଚୟ ତା'ପାଖକୁ ଖଣ୍ଡେ ଚିଠି ଦେବ । ତାର ମନ କଥା ସବୁ ଖୋଲି କହିବ ।

ଏକଥା ଭାବି ନିନଠଣ ଲଗାଇଲା। କାଗଜ ଖଣ୍ଡେ ବାହାରି କରି, ଟେବୁଲ ଉପର ଘଡ଼ିଟାକୁ ଅନାଇଲା, ଠିକ୍ ଠିକ୍ ହୋଇ ଗୋଟାଏ ବାଜିଲାଣି । କଲମଟାକୁ କାମୁଡ଼ିଲା, ଭଣ ବୋଲି ଭାବି ଲେଖିବ। ନା' ଧରି ଲେଖନ୍ତା ଯଦି ସେ କାହାକୁ—

କେତେ କ'ଣ ଭାବି ଆରମ୍ଭ କଲା ।

ସମସ୍ତ ରାତି ଗୋଟାଏ

ସ୍ନେହର—ସୁ—

କ'ଣ ବେଲି ଲେଖିବ ଡର ମାଡ଼ୁଛି । ସମ୍ପୂର୍ଣ୍ଣ ବୁଝି ପାରିବ ମୋର ମନର ଅବସ୍ଥା କ'ଣ। ମନ ଭିତରେ ଯେଉଁ ତମ ପାଇଁ ପ୍ରବଳ ଝଡ଼ତୋଫାନ ବହୁଛି, ଛାତି ଉପରେ ଯେଉଁ ବେଦନାର ପର୍ବତ ଲଦି ହୋଇଛି, ତାହା ତମଛଡ଼ା କିଏ ବୁଝାଇ ପାରିବ। ଆଖିର ଦେଖାରେ ଆଉ କେତେ ଦିନ—

ହାତଟା ଅଟକି ଗଲା। ଟିକିଏ ସଂଯତ ହୋଇ ଭାବିଲା କାହା ପାଖକୁ ଲେଖୁଛି । ପର ଝିଅ, କେତେବେଳେ କେଉଁ କଥା। ପୁଣି କଲମଟାକୁ କାମୁଡ଼ି ଅନେକ ସମୟ ଟେବୁଲ ଉପରେ ହାତ

ରଙ୍ଗ ଠିକ୍ କଲା—ନା' ଆଜି ଆଉ ହେବ ନାହିଁ; ଆଉ ଦିନେ ଶୁଭଚନ୍ଦ୍ର ଲେଖିବ ।

ଅଧା ଲେଖା କାଗଜ ଖଣ୍ଡକ, ପାଖରେ ଥୁଆ ହୋଇଥିବା "ଝଡ଼ର ଶେଷ" ଉପନ୍ୟାସ ଖଣ୍ଡକରେ ଭଣିଦେଇ ଶୋଇପଡ଼ିଲା ।

ଭୋରରୁ ଆଶା ଫୁଲ ତୋଳିବାକୁ ଆସିଲା । ରାଜୁ ସଙ୍ଗରେ କେତେ ଖେଳ ଥଟ୍ଟା ଲଗିସାରି ଯିବା ବେଳକୁ କହିଲା—ମୁଁ ପାସୋରି ଯାଇଥିଲି, ଅପା କହୁଥିଲା—ଗୋଟାଏ ଉପନ୍ୟାସ ଆଣିବାକୁ । ରାଜୁ 'ଝଡ଼ର ଶେଷଟାକୁ' ତା' ହାତକୁ ବଢ଼ାଇଦେଇ କହିଲା—ନୂଆ ବହି, ମୁଁ ପଢ଼ି ନାହିଁ, କାଲି ସାରସ୍ୱତ ଭଣ୍ଡାରରୁ ଆଣିଛି । ନେ, ଅପାକୁ ଦେବୁ । ତାର ଖିଆଲ ନାହିଁ ଅଧା ଚିଠିଖଣ୍ଡକ ତା' ଭିତରେ ଅଛି ବୋଲି । ଆଶା ବହି ଖଣ୍ଡକ ଧରି ଚାଲିଗଲା ।

ରାଜୁ କଚେରୀକୁ ଗଲା । ହିସାବପତ୍ର ଲେଖୁ ଲେଖୁ ହଠାତ୍ ତାର ମନେ ପଡ଼ିଲା—ସେ ଚିଠିଖଣ୍ଡକ କଥା । ଭୁଲରେ ସେ ବହି ସାଙ୍ଗରେ ଚାଲିଯାଇ ନାହିଁ ତ ! ମନଟା ତାର ଭାରି ଚଞ୍ଚଳ ହୋଇ ଉଠିଲା । ଚାରିଟାବେଳେ-ବେଳାବେଳି କଚେରୀରୁ ଆସି ବହିପତ୍ର ସବୁ ଖୋଜିଲା, ସେ ଖଣ୍ଡିକ ପାଇଲା ନାହିଁ । ମନରେ ଭାରି ଭୟ ହେଲା ନିଶ୍ଚୟ ବୃଥ ତା' ଭିତରେ ଯାଇଛି । ମନେ ମନେ କେତେ ଦିଅଁ ଦେବତାଙ୍କୁ ଡାକୁଥାଏ ।

ତହିଁ ଆରଦିନ ସକାଳେ ଆଶା ସେ ବହି ଖଣ୍ଡକ ଆଣି କହିଲା—ରାଜୁଭାଇ, ଅପା କହିଲା—ଆଉ ଖଣ୍ଡେ କ'ଣ ବହି ଦିଅ । ଏ ବହି ପଢ଼ି ସାରିଲାଣି । ରାଜୁ ଆଶାକୁ କିଛି ଉତ୍ତର ନ ଦେଇ ଖୋଲି ପକାଇଲା, ବହିଟିକୁ । ସେ କାଗଜ ଖଣ୍ଡିକ ସେମିତି

ଭଙ୍ଗା ହୋଇ ଥୁଆ ହୋଇଛି । ସେଥିରେ ନାଲି କାଳିରେ ଲେଖା ଅଛି —

ବେଶ୍ ଚିଠି ! ତମ ମନରେ ଯେଉଁ ଝଡ଼ତୋଫାନ ବହୁଛି, ସେ କଥା କହିଲେ ତ, କାହ୍ନୁ ବାବୁ ଅଜର ଗୋଟାଏ "ଝଡ଼ର ଶେଷ" ଲେଖନ୍ତେ ।                    କଏ ଜଣେ

ରଞ୍ଜୁ ଏତକ ପଢ଼ିସାରି ଆନନ୍ଦରେ କୁରୁଳି ଉଠିଲା । ଆଶାକୁ ଖୁସିରେ କୋଳ ଭିତରେ ଚୁପିଧରି କହିଲା—ଅପା ଏବେ ଉପନ୍ୟାସ ପଢ଼ୁଛି କାହିଁକି ? ଆଶା କୋଳ ଭିତରେ ଥାଇ ହସି ହସି କହିଲା—ଅପା ଯେତେବେଳେ ବାରଣ୍ଡାରେ ଏ ପାଖକୁ ଚାହୁଁଛି, ତମେ ସେତେବେଳେ ପଚାରୁନା ? ମତେ କାହିଁକି ପଚାରୁଛ ? ରଞ୍ଜୁ କହିଲା—ତୁ ପଚାରୁନୁ, ମୁଁ କାହିଁକି ପଚାରିବି । "ହଉ ହଉ ଖଣ୍ଡେ ବହି ଦିଅ, ମୁଁ ଯାଏ ।" ରଞ୍ଜୁ କହିଲା—ନା, ତୁ ଆଉ ବସାଇ ଦେବୁ ନାହିଁ । ଏ 'ପଲ୍ଲୀରେଣୁ' ଖଣ୍ଡକ ନେଇଯା । ଆଶା ବହି ଖଣ୍ଡକ ଧରି ଦଉଡ଼ି ପଳାଇଲା ।

ସେତିକିବେଳଠୁଁ ରଞ୍ଜୁର ଘରେ-ବାହାରେ କେଉଁଠି ମନ ଲାଗିଲା ନାହିଁ । ଅଫିସରୁ ବେଳାବେଳି ଆସି ମନଖୋଲି ସବୁ କଥା ଚିଠିରେ ଲେଖି, ଲଫାଫାରେ ପୁରାଇ ରଖିଲା—ଆଶା ଆସିଲେ ଡାକ୍ ଦେବ ବୋଲି । ଆଶା ସ୍କୁଲରୁ ଫେରି ଆସିଲା । ରଞ୍ଜୁ ତା' ହାତରେ ଚିଠିଖଣ୍ଡକ ଦେଇ କହିଲା—ନେଇ ଯା, ଅପାକୁ ଦେଇ ଦେବୁ, ଯେମିତି କେହି ନ ଦେଖନ୍ତି । ଆଶା ହସି ହସି କହିଲା—ଏ କି ଚିଠିକି ? ରଞ୍ଜୁ ତା' ଗାଲରେ ଚୁପୁଡ଼ାଟିଏ ମାରି କହିଲା—

ତୁ ଯା, ଦେଇଦେବୁ, ତୋତେ ଏତେ କଥା କାଇଁ କହୁଛୁ । ଆଶା ଚିଠିଟା ତା ବ୍ଲାଉଜ ଭିତରେ ପୁରାଇ ନେଇଗଲା ।

ସୁରମା ତା' ପଢ଼ା ଘରେ ବସି ବହି ପଢ଼ୁଥିଲା । ଆଶାକୁ ଦେଖି ଚୁପ୍ କରି କହିଲା—ବହି ଆଣିଲୁ ? ଆଶା "ପଲ୍ଲୀରେଣୁ" ଖଣ୍ଡ ତା' ପାଖକୁ ପକାଇ ଦେଲା । କହିଲା—ଅପା, ତୋର ଗୋଟାଏ ଜିନିଷ ମୁଁ ଆଣିଛି । ମତେ କ'ଣ ଦେବୁ କହ, ନ ହେଲେ ଜମାରୁ ଦେବି ନାହିଁ । ସୁରମା କୁତୁହଳ ହୋଇ କହିଲା—ତତେ ସ୍କୁଲରେ ଗୁରୁଠା ପଇସା ଦେବି, ଦେ ।

ଆଶା ବ୍ଲାଉଜ ଭିତରୁ ଚିଠିଖଣ୍ଡ ପକାଇ ଦେଲା । ସୁରମା ଚିଠିଖଣ୍ଡ ନେଇ ଏମୁଣ୍ଡ ସେମୁଣ୍ଡ ଦୁଇ ତିନି ଥର ପଢ଼ିଲା । ତା'ର ମୁହଁରୁ ଜଣାପଡୁଥାଏ ଯେପରି ଆନନ୍ଦରେ ତା ଛାତି ପୁରି ଉଠୁଛି । ସୁରମା ଉତ୍ତର ଚିଠିଟି ପଢ଼ିସାରି, ଭଙ୍ଗିଭୁଙ୍ଗି ଦେଇ କହିଲା—ଆଶା, ଏ ଚିଠି ନେଇ ଯା, ତୋ ରଜୁଭାଇକୁ ଦେଇ କହିବୁ ଅପା ନେଲା ନାହିଁ । କହିଲା—ତମେ କାହିଁକି ତା ପାଖକୁ ଯାଇଁ ଦେଲ । ତମ ଚିଠି ତମେ ନିଅ । ମୁଁ ପଢ଼ିଛି ବୋଲି ଜମାରୁ କହିବୁନି ।

ଆଶା ପୁଣି ବ୍ଲାଉଜ ଭିତରେ ଚିଠି ଖଣ୍ଡକ ପୁରାଇ ବାଆଁ ନେଇ ହୋଇ ରଜୁ ପାଖକୁ ଗୁଲିଗଲା । ବ୍ଲାଉଜ ଭିତରୁ ଚିଠିଖଣ୍ଡକ ବାହାର କରି କହିଲା—ରଜୁଭାଇ ! ଅପା ନେଲା ନାହିଁ । ତମେ ଚିଠି କାହିଁକି ଦେଲ ? ଅପା କେତେ ରାଗିଲା ।

ରଜୁ ଏ କଥା ଶୁଣି ତା' ମୁଣ୍ଡରେ ବଜ୍ର ପଡ଼ିଲା । ପା ଲାଗିଲା । ଛାତିରେ ଛୁଟିଲା ଧପ୍ ଧପ୍ ହେଲା । ତାର ବେକ

ଧନ୍ଦର ଆଶାର ଦେହକୁ ଦଣ୍ଡକେ ଚୂର୍ମାର କରିଦେଇଗଲା । ସେତେ-ବେଳେ ତାର ମନର ଅବସ୍ଥା ଯେ କ'ଣ କହିହେବନାହିଁ । ଅଶା କହିଲା—ରଜୁଭାଇ, ମୁଁ ଯାଉଛି, ସ୍କୁଲ ବେଳ ହୋଇ ଚଲିଣି ।

ତହିଁଆରଦିନ । ରଜୁ ମନ ଦୁଃଖରେ କୁଅ ମୂଳେ ଦାନ୍ତ ଘଷୁଛି । ପିଠିରେ ବାଜିଲା ଗୋଟାଏ ବାଠୁଳିଖଡ଼ାର ଗୁଳି । ଚମକିପଡ଼ି ରଜୁ ପଛପଟକୁ ଅନାଇ ଦେଇ ପିଠି ଆଉଁସି ପକା-ଇଲା । ତାର ଆଖି ପଡ଼ିଲା ଦୋ'ମହଲା ଉପରେ । ସୁରମା ହାତର ବାଠୁଳିଖଡ଼ାଟା ଧରି ବସି ପଡ଼ୁଛି । ବାଠୁଳିଖଡ଼ାର ଗୁଳିଟା ଏତେ ଜୋରରେ ବସିଥିଲା ଯେ—ମଣିଷ ଛଡ଼ା, ବଣି କି କଅ ଦେହରେ ବାଜିଥିଲେ, ସଙ୍ଗେ ସଙ୍ଗେ ସେପୁର ଦେଖିଥାଆନ୍ତା । ରଜୁକୁ ଭାରି ବାଧିଲା ସତ, କିନ୍ତୁ ଯେତେବେଳେ ସୁରମା ମାରୁଛି ବୋଲି ଜାଣିପାରିଲା, ସେତେବେଳେ ତାକୁ ଲାଗିଲା ଛୁଲା ଗୁଳିଟା ଯେପରି କଏ ମାତ୍ର ଦେଇଛି । ରଜୁ ଉପରକୁ ଥରକୁ ଥର ଅନାଉଥାଏ, ସୁରମା ଆଉ ଦେଖା ଦେଲା ନାହିଁ ।

ରଜୁ ଦାନ୍ତ ଘଷି ସାରି ଘରେ ଆସି ବସିଲା । ଭାବିଲା—ଦମୟନ୍ତୀ ରାଜହଂସକୁ ନଳଙ୍କ ପାଖକୁ ଦୂତ କରି ପଠାଇଥିଲେ; ଏ ଗୁଳିଟା ବୋଧେ ସୁରମାର ଦୂତ । ପୁଣି ଭାବିଲା—ସୁରମାର ଏଇଟା ବୋଧେ ସଂକେତ, କାମଶର, ମାରମୋହିତ ଭୁଲାଇ-ଦେଲା । ଇମିତି କେତେ କ'ଣ ଭାବୁଛି, ଅଶା ଦଉଡ଼ି ଆସି ତା' ପାଖରେ ଖଣ୍ଡେ ଚିଠି ପକାଇ ଦେଇ ପଳାଇଗଲା ।

– ପେନ୍‌ସିଲ୍ ଟିରେ ଲେଖା ଅଛି—

ସ୍ନେହର—

। କ୍ଷମା କରିବେ । ମୋ ବାଣ୍ଡୁଲଖଡା ଗୁଳିଟା ଜୋରରେ ବସିଥିବ । ମୁଁ ଜାଣି ଜାଣି ମାରି ନାହିଁ । ଭାଲ୍ ଚିଠିଖଣ୍ଡିକ ମୁଁ ପଢିଛି । କେଉଁଠି ରଖିବା ଏଇ ଭୟରେ ଫେରାଇ ଦେଇଥିଲି । ଆପଣ ଚିଠିପତ୍ର ଏଥର ଦେବେ, ଯେମିତି କେହି ନଜାଣନ୍ତି ପରେ ଚିଠି ଦେବ କ୍ଷମା କରିବେ । ନମସ୍କାର ।

ଆପଣଙ୍କର

'ଜଣେ'

ସେଇ ଚିଠି ଖଣ୍ଡିକ ଥରେ, ଦୁଇଥର, ତିନଥର ପଢିଲା । 'ପଢୁ ପଢୁ ତା' ଆଖିରେ ଲୁହ ଛଳ ଛଳ ହୋଇ ଆସିଲା ସୁରମା-ପ୍ରତି । ସୁରମାର ରୂପଟି ଯେମିତି, ମନଟି ଠିକ୍ ସେମିତି । କେଡ଼େ ନରମ, କେଡ଼େଶାନ୍ତ । ଜୀବନରେ ସେ ଯଦି ତାକୁ ସବୁଦିନ ପାଇଁ ପାଇ ପାରନ୍ତା, ତେବେ ସେ ଏହି ମାଟିଗୋଡ ସଂସାର ଉପରେ କାହାଣୀ ରାଇଜର ଆନନ୍ଦପୁରୀ ଗଢିପାରନ୍ତା । ସରଗରାଇଜର ପାରିଜାତ ଗଛ ଲଗାଇ ତାରି ଫୁଲର ସୌରଭରେ ନିଜକୁ ସବୁ-ଦିନ ପାଇଁ ଭୁଲାଇ ପାରନ୍ତା ।

ଏମିତି ବା ହାତ ଉପରେ ମୁଣ୍ଡଟିକୁ ଭରା ଦେଇ ଚିଠି ଖଣ୍ଡିକ ଆଡକୁ ଅନାଇଛି, ସେହି ଚିଠି ଖଣ୍ଡିକର ଅକ୍ଷର ଗୁଡ଼ିକ ତଳେ ଦେଖାଗଲା ଝାପ୍‌ସା ହୋଇ ସୁରମାର ମୁହଁଟି । ବାଳ ଗୁଡ଼ିକ ଫ ଚ୍ଫର୍ ହୋଇ ଉଡୁଛି, ଆଖି ଯୋଡ଼ିକ ଲୁହରେ ଢଳଢଳ ସତେ ଯେମିତି ଅନ୍ତରର କେତେ ଦିନର ସଞ୍ଚିତ ବେଦନା ସେଥି ବାଟେ ଓଜାଡ଼ି ହୋଇପଡ଼ିବ । ଓଠ ଯୋଡ଼ିକ ଥରିଥରି । ସମ୍ମୁଖ

ମୁହଁଟିରେ ଫୁଟିଛି ବିଷାଦର ଗୋଟିଏ କରୁଣ ଚିହ୍ନ । ରାଜ ଛଳ୨ ଆଖିରେ ମନେ ମନେ ପଚାରିଲା—ସୁରମା, ତମେ ମୋତେ କ'ଣ ଭୁଲ ପାଅ ? ତମକୁ ନେଇ ସବୁଦିନେ ସୁଖିହେବା କ'ଣ ମୋ ଭାଗ୍ୟରେ ଘଟିପାରିବ ? ହାତରେ ଛଡ଼ିଟି । ବାଁ ହାତରେ ମୁଣ୍ଡ ଭରା ଦେଇ ସେମିତି ବସିଥାଏ, ଥାନା ଘଣ୍ଟାରେ ଠଣ ଠଣ ହୋଇ ବାଜିଲା ଅଠଟା । ସନିଆ ଆସି ଡାକିଲା—ବାବୁ, କାଏ ଛଡ଼ି ଦେଇଛନ୍ତି, ଇମିତ ଚାହିଁକି ବସିଛନ୍ତି ? ଅଠଟା ବାଜିଲାଣି, ଭାତ ଡାଲି ହୋଇ ସାରିଛି । ପଇସା ଦିଅନ୍ତୁ ମାଛ ଆଣିବି । ଆପଣ ଗାଧୋଇ ଯାଆନ୍ତୁ । ଜଳଖିଆ ଖାଇବେ ଆଜି କେତେବେଳେ ?

ରାଜର ଚେତା ଆସିଗଲା । ଛଡ଼ି ଖଣ୍ଡିକ ଆଣି ଭୁଇଁ ଟେବୁଲ୍ ଡ୍ର ଭିତରେ ରଖି, ପଚାରିଲା—କେତେ ପଇସା ନେବୁ-ରେ ? "ଦି ଅଣା ଦିଅନ୍ତୁ ଏବେଳ, ଘିଅ ତେଲ ସରିଯିବ" । ରାଜ ଦି' ଅଣା ପଇସା ଦେଇ କହିଲା—ଚଞ୍ଚଳ କର । ବେଳା-ବେଳା ମୁଁ କଚେରୀକୁ ଯିବି । ଜଳଖିଆ ଥାଉ

ସନିଆ ଜଳଖିଆ, ପାଣି ଗିଲାସେ ଥୋଇ ଦେଇ ବଜାରକୁ ଚାଲିଗଲା ।

ରାଜ ଜଳଖିଆ ଖାଉଥାଏ ଆଉ ସୁରମା କଥା ଭାବୁଥାଏ ।

× × × ×

ସେ ଦିନ ରାଜ ୭ଟାବେଳେ କଚେରୀରୁ ଫେରି ଆସିଲା ସୁରମା ପାଖକୁ ଚିଠି ଖଣ୍ଡିଏ ଲେଖିବ ବୋଲି । ଅଗଣା କୂଅ ପାଖରେ ଗୋଡ଼ ହାତ ଧୋଉଛି । ଉପରୁ ତା' ଉପରେ ଦୁଇ ଟୋକା

ଟେଣ୍ଟ ଟେଣ୍ଟ ଗୋଡ଼ ପଡ଼ିଲା । ରାଜୁ ଅନାଇ ଦେଲା ଉପରକୁ । ସୁରମା ଲାଗ ଯାଉଛି ଆଉ ଅଶା ବାରେଇ ହୋଇ ଏଣେତେଣେ ବୁଲୁଛି । ରାଜ ଉପରକୁ ଅନାଇ ରହିଲା, କେହି ତାକୁ ଅନାଇଲେ ନାହିଁ । ରାଜପୁଣି ତଳକୁ ମୁହଁକରି ଝରକିଆଡ଼େ ଗୋଡ଼ ପୋଛି ହେଲା ବେଳକୁ, ପୁଣି ତା' ଉପରେ ଗୋଡ଼ ପଡ଼ିଲା । ରାଜ ପୁଣି ଅନାଇଲା ଉପରକୁ. ସୁରମା ତାକୁ ନ ଦେଖିଲା ପରି ସିଅଡ଼ିକୁ ମୁହଁ ବୁଲାଇ ଠିଆ ହୋଇଛି । ଆଉ ଅଶା ତାକୁ ଅନାଇ ମୁରୁକି ମୁରୁକି ହସି ହାତରେ ଗୋଟାଏ ଖେଣ୍ଟ ଠେକା ଧରି ଠାରି କହୁଛି ଫୋପାଡ଼ିବ ଯେ, ମୁଣ୍ଡ ଫାଟିଯିବ । ରାଜ ଠାରି କହିଲା—ପକା ? ଅଶା ଗୋଟାଏ ଖେଣ୍ଟିଆ ଠେକା ଅନ୍ୟଆଡ଼କୁ ଫୋପାଡ଼ି ଦେଇ ଆଉରି ଗୋଟିଏ ଠେକା ଫୋପାଡ଼ିବାକୁ ଉଠେଇଲା । ସୁରମା ଏସବୁ କଥା ଦେଖି ନ ଦେଖିଲା ପରି ମୁରୁକି ମୁରୁକି ହସି ଅଶା ହାତରୁ ଠେକାଟି ଛଡ଼ାଇ ପକାଇ କହିଲା—ଦୁଷ୍ଟ ଏମିତି କ'ଣ ହେଉଛୁ, ଗୀତ ବୋଲୁନ । ବଡ଼ ଅପା କି ବୋଉ ଦେଖିବେ ଯେ—

"ବଡ଼ ଅପା କି ବୋଉ ଦେଖିବେ ଯେ—" ଏ ପଦକ କଥା ରାଜମନରେ କେତେ ଭାବନା ସୃଷ୍ଟି କରିଦେଲା । ସୁରମା ତାକୁ ସତରେ ଭଲପାଏ ତା' ଉପରେ ଯଦି କେହି ଆକଟିବାକୁ ନଥାନ୍ତେ ତାହାହେଲେ ସେ କଦାପି ତାକୁ ଛାଡ଼ି ରହି ପାରନ୍ତା ନାହିଁ । ମୁକ୍ତପକ୍ଷୀ ପିଞ୍ଜରାରେ ଅବଦ୍ଧ ହେଲେ ସେ ଯେପରି ଅବସ୍ଥାରେ ଥାଏ, ସୁରମା ମୋର ସେହିଭଳି ଅବସ୍ଥାରେ ଅଛି । ମା' କଟକଚଣ୍ଡୀ ସତେ କରିବ; ମୁଁ ସୁରମାକୁ ପାଇପାରିବ ।

ରାଜା ଇମିତ ଭାବୁଛନ୍ତି, ଦୋ' ମହଲା ଘର ଉପରୁ ଆଶା ଲୁଚି ଲୁଚି ଗାଇଲା—

"ଆଖିର ଦେଖା ମୁଁ ଦେଖିବି ବୋଲି ଗୋ
ହଞ୍ଜି ସଦାଳରେ ଅନାଇ ଥାଏ ।
ଏପାଖ ସେପାଖ ଦୃଶ୍ୟ ଥିବା ଯାଏ,
ଆଉ ଉହାଡରେ ନରେଖି ରହେଁ ।

ରାଜା ଉପରକୁ ଅନାଇଲେ, ସୁରମା ଆର ପାଖ କୋଠା ଝାନ୍ଜିରୁ ଅଜାଡି ପଡ଼ୁଛି । ତାର ମୁହଁର ବେଣୀଟି ଛଡା ଆଉ କିଛି ଦେଖା ଯାଉ ନାହିଁ । ଆଶା ଗୀତ ବୋଲୁଛି ଆଉ ଇଆଡ଼କୁ ଅନାଉ ନାହିଁ । ରାଜା ସେହି ଆଡ଼କୁ ଅନାଇ ରହିଲେ ।

ତଳ ମହଲରୁ କିଏ ଡାକିଲେ—ଆଶା ସୁରମାକୁ—ଡାକି ଦିଅ, ଜଳଖିଆ ଖାଇବ । ଆଶା ଗୀତ ବୋଲି ବନ୍ଦ କରି ଏପାଖକୁ ବୁଲିପଡ଼ି ଅସି ତଳକୁ ଅନାଇଲେ । ରାଜା ଡଜଲିଆ ହାତରେ ଧରି ଜୁଅ ମୂଠେ ଟିଏ ହୋଇଛି । ଆଶା ଚୂପ ଚୂପ ଡାକିଲା—ରାଜୁଭାଇ ହେ ରାଜୁଭାଇ ! ଅଟେ ଜଳଖିଆ ଖାଇବାକୁ ଯାଉଛୁ, ତମେ ଥା' । ରାଜୁ ତାକୁ କ'ଣ ପଚାରିବାକୁ ଯାଉଥିଲା, ପଚାରି ପାରିଲା ନାହିଁ । ଆଶା ଚାଲିଯାଇ ସିଡ଼ି ଦୁଆରମୁହଁରେ ଡାକିଲା—ହେ ସୁରମା-ଅପା, ଜେଜୀଅପା ଡାକୁଛନ୍ତି ପରା ! ଆସୁନୁ । ଆଶା ସିଡ଼ି ବାଟେ ତଳକୁ ଓହ୍ଲାଇ ଆସୁ ଆସୁ ପୁଣି ଡାକିଲା—ଆ, ସୁରମା ଅପା ?

ସୁରମା ଲୁଗା କାନିରେ ଆଖି ପୋଛୁ ପୋଛୁ ବାହାରି ଆସିଲି । ପୁଣି ଦୁଇ ତିନିଥର ଆଖି ପୋଛୁ ପୋଛୁ ତଳକୁ ଓହ୍ଲାଇ ଆସିଲା । ଆଖିରୁ ଲୁହ ଗଡ଼ୁଛି ବୋଲି କାଲେ କିଏ

ଜାଣିବ ଏହି ଉତ୍ସବରେ ଲୁଗା କାନି । ଦେଇ ଆଖି ମଳୁଥାଏ ତଳ ପାହାଚ ପାଖରେ ଉଷା ସଙ୍ଗରେ ତାର ଭେଟ ହେଇଗଲା ଉଷା ତାକୁ ଦେଖି ପଚାରିଲା—କ'ଣ ହେଲା କିଲୋ ?

ଟିକିଏ ବ୍ୟସ୍ତ ହୋଇ ସୁରମା କହିଲା—ନା, କିଛିନାହିଁ ପୋକ ଗୋଟାଏ ଆଖିରେ ପଡ଼ିଲା ।

ପୂରୁବ ପଟରୁ ଜହ୍ନ ଚନ୍ଦ୍ରଜଦଆ ମାରି ଉଇଁ ଆସିଲା । ପୋଖରୀରେ ନବ ରୂପସୀ କଇଁ ମୁରୁକି ମୁରୁକି ହସି ଆଖି ଠାରି ଡାକିଲା—ଆସ ହେ ପ୍ରିୟ, ଚୁମ୍ବନ ଦିଅ । ଜହ୍ନ, ମେଘ ଉହାଡରେ ରହିବ ଗୁହାଣୀ ଚାହିଁ ଏପାଖ ସେପାଖ ଅନାଉ ଥାଏ ।

ସୁରମା ଜଳଖିଆ ଗଣ୍ଡେ ଖାଇ ଦେଇ ଡାକିଲା, ଆଶା କୋଠା ଉପରକୁ ଯିବା ଆ । ଆଶା କହିଲା—ମୁଁ ଯିବନାଇଁ ମାଁ ଙ୍କୁ ଏତେହଣି ଅସିବେ । ତୋର କିଛି ପଢ଼ା ନାହିଁ ବୋଲି ସିନା ।

ସୁରମା ତାକୁ କିଛି ନ କହି ଉପରକୁ ଗୁଲିଗଲା । ବାଆଁ ହେଇହୋଇ ଏଖଞ୍ଜାକୁ ଅନାଇଲା, କେଇ କୁଆଡେ ନାହିଁ । ରାଜୁ ଯେଉଁ ଘରେ ଶୁଏ, ସେଇଘରେ ଆଲୁଅଟି ଜଳୁଛି । କିଛି ସମୟ ଛାତ ଉପରଟାରେ ଏପାଖ ସେପାଖ ବୁଲିଲା । ଏ ଖଞ୍ଜାକୁ ତିନି ଚାରିଥର ଅନାଇଲା, କିନ୍ତୁ ରାଜୁକୁ ଦେଖିବାକୁ ପାଇଲା ନାହିଁ ।

ଦାଣ୍ଡ ଫାଟକ ପାଖରେ ମଟର ଘଡ଼ଘଡ଼ ଶବ୍ଦ ହେଲା । ଆଶା ଦଉଡ଼ି ଆସି ଡାକିଲା—ଅପା, ଚଞ୍ଚଳ ଓହ୍ଲାଇ ଆ । ବାପା ପରା ଅସିଲେଣି, ସେଦିନ ଛାତ ଉପରକୁ କେହି ଯିବେ ନାହିଁ

ଭୋଲ୍ ପଖ ବାପା ମନା କରିଥିଲେ ? ସୁରମା ଡର ଡର ହୋଇ ଉଠକୁ ଚାହିଁଲା ଅସିଣ୍ଡ ।

ଚୁପ୍ ହୋଇ ପଢ଼ା ଘରେ ଯାଇ ବସିଲା । ବହିଟା ମେଲାଇଲା କିନ୍ତୁ ପଢ଼ିବାକୁ ଆଦୌ ଇଚ୍ଛା ହେଉନାହିଁ । କେବଳ ପୃଷ୍ଠା ପରେ ପୃଷ୍ଠା ଲେଉଟାଇ ଚାଲିଥାଏ ।

ଉଷା ଆସ ଡାକିଲା—ସୁରମା, ଆ' ଉପରକୁ, ଆଶା ବୋଉ ପାଖରେ ଗୀତ ବୋଲିବ । କାଲିତ ରବିବାର, କ'ଣ ପଢୁଛୁ । ସୁରମା କହିଲା—ନା ଅପା ତୁ ଯା', ମୋର ପଢ଼ା ଗୁଡ଼ା ଅନେକ ବାକି ପଡ଼ି ଯାଇଛି ।

ଉଷା ଚାଲିଗଲା । ସୁରମା ବହି ଗୁଡାକ ଖାଲି ଏପାଖ ସେପାଖ କରୁଥାଏ । ମନଟା ଭାରି ବ୍ୟସ୍ତ ଆଉ ଛନ ଛନ । କୁଆଡ଼କୁ ମନ ଯାଉ ନଥାଏ । କେବଳ ରାଜ କଥା ଭାବିବା ଯେମିତି ତାର ଏକମାତ୍ର ଭାବନା । ଗୋଟାଏ ଅଜଣା ସୁଖ ଆଶାରେ ମନଟା ଛଟପଟ ହେଉଥାଏ, ଆଉ ସେହି ସୁଖ ଆଶା ପଥରେ ପଥିକ ହେବା ପାଇଁ ଛାତିଟା କଟୁଥାଏ ପଡୁଥାଏ । ହେବାର କଥା—

ନୂଆ ଦେହ, ନୂଆ ମନରେ ଯେତେବେଳେ ଆଲିଙ୍ଗନ ଚୁମ୍ବନର ମୋହ ଆସେ, ଆଉ ସେହି ମୋହଟା ଜଣଙ୍କଠାରୁ ନିକଟରେ ପାଇବାର ଆଶା ଥାଏ, ସେତେବେଳେ ପୁରୁଷ ହେଉ ବା ସ୍ତ୍ରୀ ହେଉ, ତାଙ୍କର ପରଶ ହେଲା ପରେ, ମନରେ କେତେ କେତେ ପରିବର୍ତ୍ତନ ଆସେ, ସବୁ କଥାଗୁଡ଼ା କେତେ ରହସ୍ୟ କେତେ ଅଡୁଆ ଅଡୁଆ ଲାଗେ । ସହଳ ମିଳନ ଆଶାରେ ମନରେ କଷ୍ଟ ହୁଏ ସତ, ଦେହ ମଣ୍ଡ ପ୍ରତି ଅଙ୍ଗ

ଅପେ ସତ, ଜଣେ ଅନ୍ୟ ଜଣଙ୍କ କଥା ଭାବି ଅନ୍ଧାରରେ ଆଖିରୁ ଲୁହ ଗଡ଼ାଇ ତକିଆ ଓଦା କରେ ସତ, କିନ୍ତୁ ତାର ଭିତରେ ଆଉ ପ୍ରକୃତ ଆନନ୍ଦ, ପରସ୍ପରକୁ ପାଇବାର ଅଶାହ୍ର ପ୍ରକୃତରେ ଜୀବନକୁ ସୁଖ ଦିଏ । ସେଥିପାଇଁ —

ନଈ କେତେ ଦୂରରୁ ମଜା ଅମଜା ନ ମାନି ଆନନ୍ଦରେ କୁଳୁକୁଳୁ ହୋଇ ସମୁଦ୍ର ସଙ୍ଗେ ମିଶିବା ପାଇଁ ଧାଏଁ, କବି କଇଁ ବନ୍ଧୁ, ଚନ୍ଦ୍ର ଆଶାରେ ଆଶାୟୀ ହୋଇ ଆନନ୍ଦରେ ଗୀତ ଫୁଲାଏ, ବସନ୍ତ ଆସିବ, ଏଇ ଆଶାରେ କୋଇଲି ଦୁନିଆ ସାରା ଆନନ୍ଦରେ ଗୀତ ଗାଇ ବୁଲେ । କିନ୍ତୁ ଯେତେବେଳେ ନଈ ସମୁଦ୍ର ସଙ୍ଗେ ମିଶେ, କଇଁ ବନ୍ଧୁ ଚନ୍ଦ୍ରକୁ ଦେଖି ପାରେ, କୋଇଲି ବସନ୍ତର ଦୂତ ହୋଇ ଏଣେ ତେଣେ ବୁଲେ, ସେତେବେଳେ ଆଗପରି ଆଉ ମନର ଛନ ଛନିଆ ସରାଗ ନ ଥାଏ ।

ସ୍ୱରମା ସେମିତି ବସିଥାଏ । ଆଖିଯୋଡ଼ିକ ବହି ଉପରେ ସ୍ଥିର । ଭାବନା ଉପରେ ଭାବନା କୂଳ ଅକୂଳ ମାଡ଼ି ଚାଲିଛି, ଠିକ୍ ଗୋଟାଏ ପରେ ଗୋଟାଏ ଉଠୁଥିବା ସମୁଦ୍ର ତରଙ୍ଗ ପରି ଇମିତି କେତେ କ'ଣ ଭାବି ଭାବି —ରଫ୍ ଖାତାଟା ଟାଣି ଆଣିଲା, ପେନସିଲଟା ବାହାର କରି, ବାଁ ହାତ ଉପରେ ମୁଣ୍ଡଟି ଭରା ଦେଇ ଅନେକ ସମୟ ପରେ ଆରମ୍ଭ କଲା—

ସ୍ନେହର—

ଚିଠି ନଦେଇ ଥିଲି ବୋଲି ତ, ଏତେ କଥା ଆଉ ଚିଠିଏ କେବେ ଲେଖିଥିଲ, ମୁଁ ତ ଚିଠି ଦେଇ ଥିଲି । ତମର ଚିଠି କାହିଁ

ହାତ ଅଟକି ଗଲା ! ନାସ୍ତାଙ୍କର ପ୍ରକୃତ ଭିତରେ ଭିତରେ ହାତକୁ ଟାଣି ଧରିଲା । ମନେ ମନେ ତାକୁ ଭାରି ଲାଜ ମାଡ଼ିଲା, କ'ଣ ପାଇଁ ତାଙ୍କ ପାଖକୁ ସେ ଚିଠି ଲେଖିବ । ସେ ଭାବିବେ କ'ଣ ! ଆଗ ଦଅନ୍ତୁ ସେ । ତା'ପରେ ସେ ଯାଇଁ ଦେବ । ଏଇ କଥା ଭାବୁ ଥାଏ, ଅଜି ସେଦ୍ୱାପାଖ କାଗଜ ଖଣ୍ଡିକରେ ପେନ୍ସିଲ୍ ଗାର ଟାଣୁଥାଏ । ଇମିତି କେତେ ବେଳ କଟିଗଲା ।

ଅଶା କାଲ୍ କିଲ ହୋଇ ଦଉଡ଼ି ଆସି ସୁରମା ପାଖରେ ଠିଆ ହୋଇ ଡାକି କହିଲା—ଅପା, ବୋଉ ଡ଼ାକୁଛି ଖାଇବୁ ଆ, ଚିଠି କାହା ପାଖକୁ ଲେଖୁଛୁ ? ରାଜୁ ଭାଇ ପାଖକୁ ନା ! ସୁରମା ତା' ପିଠିରେ ହାତ ଦେଇ କହିଲା— ଚୁପ୍ ଦୁଷ୍ଟ, କେଡ଼େ ପାଟି-କରୁଛୁ । ଆଶା ଚମକିଲା ପରି ଘରଆଡ଼କୁ ଅନାଇ ଦେଲା, କାଳେ କିଏ ଶୁଣିଲା କି !

ତା'ପର ସୁରମା ଚଟ୍ ଖାତାଟି ବହି ତଳେ ରଖି ଦେଲା । ଆଶାକୁ ନିଜ ଆଡ଼କୁ ଆଉଜେଇ ଆଣି ପଚାରିଲା—କହିଲୁ ! ରାଜୁଭାଇ ଅଡ଼େ ଯାଇଥିଲୁ ? ଅଶା ଗେହ୍ଲେଇ ହୋଇ ମୁଣ୍ଡ ହଲାଇଲା । ସୁରମା ପଚାରିଲା—କ'ଣ ତୋ ରାଜୁଭାଇ କରୁଥିଲେ ? ମୁଁ ଜାଣିନି, ଚୋରି ଛପି ଛପି ଯାଇଁ ଉଙ୍କି ଦେଇବା । ଘର ଦୁଆର ମୁହଁରେ ଠିଆ ହୋଇ ଦେଖିଲି ଯେ—ଭିତରୁ କବାଟ ବନ୍ଦ ହୋଇଛି । କବାଟ ଫାଙ୍କ ବାଟେ ଅନାଇଁଲି, ସେ ଖଟ ଉପରେ ବସି କ'ଣ ଲେଖୁଛନ୍ତି । ଟିକିଏ ରହି ପଳେଇ ଆସିଲି, ତାଙ୍କୁ ଡାକି ନାହିଁ । ତୋ ପାଖକୁ ଚିଠି ଲେଖୁଛନ୍ତି, ନୁହେଁ ସୁରମା ଅପା ?

ସୁରମା ଅନନ୍ଦରେ ତା ଗାଲରେ ଗୋଟିଏ ସରୁ ଗୁଣ୍ଡ ମାରି କହୁଲ—ଦୁଷ୍ଟ, ସବୁବେଳେ ସେମିତ କହୁଛୁ ଭଏ ଶୁଣ ଯେ, ଗୁଲେ ଖାଇବାକୁ ଯିବା । ଅଣା, ସୁରମା ଉଠି ବେପେ ଘର ଆଡକୁ ଗୂଲି ଗଲେ ।

ସୁରମାର ଖାଇବାକୁ ଅଦୌ ଇଚ୍ଛା ନଥାଏ । ଯାଇତ ଗଣ୍ଡେ ଖାଇ ହାତ ଧୋଇ ଧୋଇ ପଗ୍ଦରଲ—ଅଣା, କେଉଁ ଶୋଇବୁ କହେ ? ଭଉଣୀଅପା ପାଖରେ ନା, ମୋ ପାଖରେ ରଞ୍ଜନ କହ, ମୋତେ ନିଦ ମାଡ଼ିଲଣି । ଅଣା କହୁଲ—ମୁଁ ପାଖରେ ଶୋଇବ ଅପା, ଲମ୍ବା କଥ ଶୁଣା ପାରିବୁ ।

× × × ×

ରାତ ଗୋଟାଏ । ଚାକର ବାକର ଭଏ କୁଆଡେ ଅଲ୍ପ ହୋଇ ପଡ଼ୁଛନ୍ତି । ଏତେ ବଡ଼ ଦୋ'ମହଲା କୋଠାଟା ଶୂନଶାନ ଦାଣ୍ଡ ବଜ୍ଲ ଆଲୁଅଟି ଛଡ଼ା ସବୁ ଅଲୁଅ ଲିଭି ଯାଇଛି । ଚାରି ଆଡ଼ ଖାଲି ଖାଁ ଖାଁ—ନିଶୂନ । ମଝିରେ ମଝିରେ ଦାଣ୍ଡଆଡେ ଗୁରିଆଡ଼େ କୁକୁରଟା ଭୁକି ଉଠିଲେ ଟିକିଏ ନିସ୍ତବ୍ଧତା ଯାଉଛି, ନଚେତ ନାଇଁ ।

ସବୁଦିନେ ସେ ନ'ଟା ବେଳକୁ ଶୋଇ ପଡ଼େ । ଅ- ଏପାଖ ସେପାଖ ହୋଇ ଗୋଟାଏ ବାଜିଲା—ତଥାପି ତା ଅଖ ନିଦ ଅସିନାହିଁ । ଦେହଟା ଭାରି ଗରମ ଗରମ ଲଗୁଥି ଛାତିଟା ଉପରୁ ଏ ପଡ଼ୁଥାଏ । ଭାବନାର ସୀମା ନାହିଁ ।

ଦୁଇଟା ବାଜିଲା, ତଥାପି ଆଖି ଲ୍ଖା ପଡ଼ିଲା ନାହିଁ । ଶାଟା ଭାରି ଅଡୁଆ ଅଡୁଆ ଲାଗୁଥାଏ । ସୁରମା ଉଠି ବାହାର

ଅସିଲା । ଘରଅଟଡ଼ ଅନ୍ଧାର । ସନଅ ଗୃହବରଣ୍ଡା ତା'ର ଭିତରେ କେଉଁଠି ଶୋଇଛି ଯେ ଘୁଙ୍ଗୁଡ଼ି ଶବ୍ଦରେ ଦୁଆରଟା କମ୍ପୁଛି ! ପିଣ୍ଡା ଖୁଣ୍ଟକୁ ଆଉଜି ସୁରମା ବସିଲା । ଥଣ୍ଡା ପବନ ବାଜି ଦେହ ଟିକିଏ ଭଲ ଲାଗିଲା ସତ; କିନ୍ତୁ ମନଟା ପରିବର୍ତ୍ତିତ ହେଲା ନାହିଁ । ଛାତି ଭିତରଟାରେ ଯେପରି କିଏ ମୁଗୁର ପିଟୁଛି ।

ଅଧ ଘଣ୍ଟା ବସିଲା, ଏତେ ସମୟରେ ଉଷା କି ବୋଉ ଇତ୍ୟାଦି କିଏ ବାହାରକୁ ଉଠିଲେ ତାକୁ କାଳେ କ'ଣ ଭାବିବେ ଏଇ ଭୟରେ ପୁଣି ଘର ଭିତରକୁ ଉଠି ଆସିଲା । ବ୍ଲାଉଜଟା ଦେହରୁ ଫିଟେଇ ଟେବୁଲ୍ ଉପରେ ରଖି; ବିଛଣାରେ ଯାଇ ଶୋଇଲା । ମନଟା ଛଟପଟ, ଛାତିଟା ଫାଙ୍କା ଫାଙ୍କା, ତାହବି ମାଡ଼ୁଥାଏ ।

ହଠାତ୍ ତା' ମନରେ କ'ଣ ଖିଆଲ ଆସିଲା କେଜାଣି, ଅଶାକୁ ଅଣ୍ଡାଳି ପକାଇଲା । ଅଶାଟି ନିଦଘୋର ନିଦରେ ଶୋଇଛି, ସୋର ଶବଦ କରୁନାହିଁ । ଦେହ ମୁଣ୍ଡରୁ ଲୁଗା ଯାଇଁ କେଉଁଠି ପଡ଼ିଛି ।

କାହିଁ ? ସୁରମା ମନରେତ ଶାନ୍ତି ଆସିଲା ନାହିଁ । ବରଂ ଅଶାନ୍ତିକୁ ଦେଇ ଅଶାନ୍ତି । କେମିତି ଗୋଟାଏ ଅନ୍ୟ ଅଜଣା ପରଶ ପାଇଁ ମନଟା କୁଦା ମାରୁଥାଏ । ଇମିତି କେତେବେଳେ କଟିଗଲା । ବିଛଣାରେ ଏପାଖ ସେପାଖ ଗଡ଼ି ଗଡ଼ି କେତେବେଳେ ସେ ଆଖିକୁ ତା' ନିଦ ଆସିଗଲା, ସେ ଜାଣେ ନାହିଁ ।

ପାହାନ୍ତି ତାରା ଉଇଁଲା । ସବୁଜ ବାଇଜର ରଜାଙ୍କି ଅ, ସୂର୍ଯ୍ୟ-ଦେବ ଆସିବେ ବୋଲି ସର୍ଗ ଅଗଣାରୁ ବାସି ଉସ୍ଫୁଲ ଓଳାଉ

ଥାଏ । ଗଛ ଗହଳି ପତ୍ରର ଫାଙ୍କରୁ ଅନ୍ଧାର ନ ଘୁଞ୍ଚୁଣୁ, ନିଦ୍
ବାଉଳା ଡାମରବାଉ ଗୁଡ଼ା ଅକାଶଟା ଯାଇ ଚହଲ ପକା
ଥାଆନ୍ତି । ପବନ ଚେଇଁ ଝକୋଳିର ପଣସ ତଳେ ନିଦୋ
ନିଦରେ ଶୋଇଥିଲା କି କ'ଣ, କୁଆ ଡ଼ାକରେ ନସର ପସ
ହୋଇ ସୂର୍ଯ୍ୟଦେବଙ୍କୁ ସାଜୁଛି ଆଣିବାପାଇଁ ପୂର୍ବଦିଗକୁ ଦଉଡ଼
ଥାଏ । ତାପରେ ପରେ ପରେ ବି ଦୁନିଆର ସବୁ ପକ୍ଷୀ ମଙ୍ଗଳ ସଙ୍ଗୀତ
ଗାଇ ସେଇ ଅଡ଼କୁ ଛୁଟିଲେ । ଅନ୍ଧାର ଗଲା, ଆଲୁଅ ଆସିଲା ।

ରାସ୍ତା ଘାଟ ଲୋକ ଗହଳରେ ପୂରିଗଲା । ଘରର ବାହାର୍
ଉଠି ଯୋଷୀକାମ କଲେ । ଅଧାରୁଆ ବେଳୁ ଧୋବମା ବୁଢ଼ୀ, ସେ
ଦେଇଁ ଭଳି ବଡ଼, ଗୁଲ୍‌ଗୁଲା, ପିଅଜ ଘୁଗ୍ନି ତା ପସରା ମେଲାଇ
ଦେଲା । ସହାଲ୍ ପାଳି ଘାଟ ପାର ହୋଇ ଅରପାରିରୁ ବାଜବଣି
ଶଉରୁଣୀ ଟୋକାଏ ଦାନ୍ତକାଠି, ପତର ବୋଝ ମୁଣ୍ଡାଇ ଘରେ
ଘରେ ଡ଼ାକିଲେ—ମା',ପତର ନେବ ଗୋ ! ଦାନ୍ତକାଠି ନେବ !

ଶରତବାବୁ ଡ଼େପୁଟି ସକାଳୁ ଜଣେ ବନ୍ଧୁଙ୍କୁ ଆଣିବାପାଇଁ
ଷ୍ଟେସନକୁ ମଟର ନେଇ ବାହାରି ଗଲେ ।

ଆଶା ସକାଳୁ ଉଠି ଦେଖିଲା, ସୁରମା ନିଦରେ ଶୋଇଛନ୍ତି,
ନ ଡାକି ବାହାରକୁ ଉଠି ଆସିଲା । ଉଷାଅପା, ନବୀଅପା, ବୋଉ
ସମସ୍ତେ ଯାଇଁ ବାରିରେ ଦାନ୍ତ ଘଷୁଛନ୍ତି । ଆଶା ଯାଇଁ ତାଙ୍କର
ପାଖରେ ବସି ଦାନ୍ତ ଘଷିଲା । ବୋଉ ପଚାରିଲେ—ଆଶା,
ସୁରମାକୁ ଡାକି ଦେ । ଏତେବେଳ ଯାଏ ଶୋଇଛନ୍ତି ନା, ସ୍କୁଲ
ପରା ଆଜି ଅଛି ।

ଆଶା ଦାନ୍ତ ଘଷି ସାରି ଆସି ଡ଼ାକିଲା—ସୁରମାଅପା, ଉଠ,
କେତେଦିନ ହେଲଣି, ସ୍କୁଲକୁ ଆଜି ଯିବୁ ନାହିଁକି ?

ସୁରମା ନାକ ଗର ଗର ହୋଇ କହିଲା—ଆଜ ଟିକିଏ ରହ, ମୋ ଦେହଟା ଭଲ ନାହିଁ । କବାଟ ଟିକିଏ ଅଉଜେଇ ଦେ । ଆଶା କବାଟ ଆଉଜାଇ ଡାଲାଟି ନେଇ ସଜ ଘର ଖଞ୍ଜାକୁ ଫୁଲ ତୋଳିବା ପାଇଁ ବାହାରି ଗଲା ।

ସଜ ସେତେବେଳକୁ ଦାନ୍ତ ଘଷିସାରି ଗାଧୋଉ ଥାଏ । ଆଶାକୁ ଦେଖି ଅଭିମାନରେ ମୁରୁକି ମୁରୁକି ହସିଲା-କଥା କହିଲା ନାହିଁ । ଆଶା ବି ଲାଜ କଲା ପରି ଆଡ ନୟନରେ ଅନାଇ ଅନାଇ ଗଛ ମୂଳକୁ ଗୁଳିଗଲା ।

ସଜ ଲୁଗାପଟା ପିନ୍ଧି, ମୁଣ୍ଡ କୁଣ୍ଡାଇ ସାରି ଡାକିଲା—ଆଶା ଲୋ, ଆଶା । ଜମାରୁ ଶୁଣିଲା ନାଇଁ । ସଜ କେତେ ଅପେକ୍ଷା କଲା, ତାପରେ ପାଖକୁ ଯାଇଁ ତା' ବେଣୀକୁ ଧରି ସୋହାରି ଘୋଷାରି କହିଲା—କଲୋ ! ଶୋଭେ ଶୁଭୁ ନାହିଁ କି ? ଆଶା ଗୁଁ ଗୁଁ ହେଲା—ନାଇଁ, ମତେ ଛାଡ଼ । ମୁଁ ଯିବ ।

ସଜ ତା ହାତରୁ ଫୁଲ ଡାଲାଟି ଛଡ଼ାଇ ଥଳେ ଥୋଇ, ତାକୁ ଟାଣି ଟାଣି ଘର ଭିତରକୁ ଆଣିଲା । କୋଳ ଉପରେ ବସାଇ କହିଲା—କାଲେ ! କାଲି ସନ୍ଧ୍ୟା ବେଳେ କୁଆଡ଼େ ଯାଇ—ଥିଲୁ କି ? ଦେଖ ତ ମିଳିଲା ନାହିଁ ।

ଆଶା ଆଖି ଝୋଖି ଦେଇ ମୁହଁ ଫୁଲାଇ କହିଲା—ଇମିତ କଥା କହନା ମ ! ମୁଁ ଆସି ନ ଥିଲି ? ଭିତର କବାଟ ବନ୍ଦ ହୋଇଥିଲା କାହିଁକି ? ଦୁଆର ମୁହଁରେ ଠିଆ ହୋଇ ହୋଇ ଚଲି, କବାଟ ଜମାରୁ ଫିଟାଇଲ ନାହିଁ । ଫେଟରେ ମୋର ଅଳ୍ପ ଦୋଷ ଦେଉଛ ନା ! କହି ଅଙ୍ଗୁଠି ଦେଖାଇ, ଆଖି ମିଟି ମିଟି

କରି କହିଲା—ଅଛି ବହି, ଯାହା ଲେଖୁଥିଲି ମୁଁ ଜାଣେ ନେ—ସେ ଶଟି ଜମାରୁ ନେଇ ଦେବ ନାହିଁ, ଶରି ଠିକ ଠିକ କରି ଫୋପାଡ଼ି ଦେବି, ଜାଣିଥା ।

ରାଜ ହସି ହସି କହିଲା—ହଉ ହଉ, ସେଥିକି ରାଗ ହୋଇଥା । ଠୋ ଅଖି ମୁଁ ଦେଖିଛି, ଅ ଜଳଖିଆ ଖା ! ଅଶା ମୁହଁ ବୁଲାଇ—ନା, ମୁଁ ଯମାରୁ ଖାଇବି ନାହିଁ, ଗାଧୋଇ ନାହିଁ ପରା !

ଇସ୍ ଭାରି ମଣିଷଟା ତ ! ନ ଗାଧୋଇଲେ ଖାଇବ ନାହିଁ ପୁଣି ! ଏହା କହି ତା ପାଟିରେ ଖିରମୋହନ ଗୋଟାଏ ଗୁଞ୍ଜି ଦେଲା । ଅଶା ଅଖି ଖୋସି ଖୁବ୍ ଜୋରରେ ଦାନ୍ତ ଚାପି ରଖିଲା ରାଜ ସେଇଠୁ ଢ଼'ଣ କଲାନା, ତା ଅଣ୍ଟାରେ ହାତ ମାରି ଇମିତି କୁତୁକୁତୁ କଲା ଯେ—ଅଶା ଫେଁ କରି ହସି ଉଠିଲା । ରାଜ ତା ପାଟିରେ ଖିରମୋହନଟା ପୂରାଇ ଦେଇ ହାତରେ ମୁହଁ ଚାପି ଧରିଲା । ଅଶା ଗୁଁ ଗୁଁ ହେଉଥାଏ, ଅଉ ଦାଢ଼ି ବୁଲାଉ ଥାଏ ।

ତା'ପରେ ଅଶା ତା ପାଖରେ ବସି ଜଳଖିଆ ଖାଇ ହାତ ଧୋଇସାରି କହିଲା—ରାଜୁ ଭାଇ, ମୁଁ କେତେବେଳୁ ଆସିଛିଣି, ଅଜି ସ୍କୁଲ ଅଛି ଯେ, ମୁଁ ଯାଉଛି ।

ରାଜୁ ବହି ଭିତରୁ ଶଟିଟା ବାହାର କରି ଅଶା ହାତକୁ ବଢ଼ାଇ ଦେଇ କହିଲା—ନେ ଅପାକୁ ଦେବୁ । ଯେମିତ ଦେଇ ଦେବନ୍ତି । ଅଶା ମୁଣ୍ଡ ଝୁଙ୍କାଇ ମୁରୁକି ମୁରୁକି ହସି କହିଲା—କୁ ଦୃହଁ ପାରିଲି ଯେ, ଏଇଥିପାଇଁ ଜଳଖିଆ ମୋତେ ଖୋଇ ଦେଇ ଥିଲ ନା ? ଶଟିଟା ଭ ଜମାରୁ ଦେବ ନାହିଁ । ଅମ ଦାଣ୍ଡ ଅଗଣେ

ଭୁଲ୍ କାହାର ?

ଯେଉଁ ମ୍ୟୁନସିପାଲ୍‌ଟିର ଅଳିଅଟିଣୀ ଥୁଆ ହୋଇଛି; ସେଇ-ଥିରେ ଠିକ୍ ଠିକ୍ ଭଳି ତଳ ଫୋପାଡ଼ଦେବ ।

ରାଜ କହିଲା—ହଉ ଯା, ତୋ ଏ ବାହାଦୁରୀ କଥା ଅପାକୁ କହିବୁ !

ଆଶା ବ୍ଲାଉଜ ଭିତରେ ଶଠି ଖଣ୍ଡିକ ପୁରାଇ ଫୁଲଡ଼ାଲିଟି ନେଇ ପଳାଇ ଗଲା । ଘରେ ଯାଇ ଦେଖିଲା—ସୁରମା ଅପା, ଦାନ୍ତ ଘଷିସାରି ଖଟ ଉପରେ ବସି ପଢୁଛି । ଆଶା ଠାକୁରଘରେ ଫୁଲ ଡାଲିଟି ରଖିଦେଇ ଡାକିଲା—ବୋଉ, ବୋଉମ ? ମୋତେ ଭୋକ କଲାଣି, ଜଳଖିଆ ଦେ ।

ବୋଉ ଆର ଘରେ କ କାମ କରୁକରୁ କହିଲେ ଥାଳି-ଅରେ ତୋ ଜଳଖିଆ ରୋଷେଇ ଘରେ ଥୁଆ ହୋଇଛି ! ପୁଷ୍ପାକୁ ମାଗ୍ ।

ଆଶା ଦୌଡ଼ିଗଲା ରୋଷେଇ ଘରକୁ । ପୁଷ୍ପାକୁ କହିଲା ମୋ ଜଳଖିଆ ଦିଅ । ପୁଷ୍ପା ତା' ହାତକୁ ଜଳଖିଆ ବଢ଼ା-ଦେଉଁ ଦେଉଁ କହିଲା—ଟିକେ ଦେଇ, ଏତେବେଳେ ଯାଏ କେଉଁଠିଥିଲ କି ? ତମେ ଆଜି ସବା ପଛରେ ପଡ଼ିଲ, ନୁହେଁ ?

ଆଶା ଥାଳିଅଟି ଧରି ଖାଇଖାଇ, ସୁରମା ଘରକୁ ଆସିଲା । ତା' ପାଖରେ ବସିପଡ଼ି କହିଲା—ଅପା, ତୁ ଖାଇ ସାରିଲୁଣି ? ସୁରମା କହିଲା ହୁଁ । ଆଶା ଖଣ୍ଡିଏ ରୁଟି ପାଟିରେ ପୂରାଇ ଚୁପ୍ ଚୁପ୍ କରି କହିଲା – ଅପା, ମୋତେ କ'ଣ ଦେବୁ କହ ତୋର ଗୋଟିଏ ମୁଁ ଭଲ ଜିନିଷ ଆଣିଛି । ସୁରମା ତା' ଅଡ଼କୁ ଚାହିଁଲା । ତାର ଗମ୍ଭୀର ଦୃଷ୍ଟିରେ ଫୁଟି ଉଠିଲା [illegible]

ହାସ୍ୟ ରେଖାଟିଏ । ଆଶା କାନ୍ଧ ଉପରେ ହାତ ପକାଇ, ସୁରମ
କହିଲା—ଦେ, ମୁଁ ତୋତେ ଗୋଟିଏ ଭଲ ରୁମାଲ୍ ଦେବି ।

ଆଶା ଟିକିଏ ଅଭିମାନ କରି ପରି କହିଲା—ହୁଁ, ତୁ
ମୋତେ ଠକୁଛୁ । ସେଦିନ ପରି କହିଥିଲୁ ସ୍କୁଲରେ
ଗୁରୁଣ୍ଡା ପଇସା ଦେବାକୁ, କାହିଁ ? ଦେଲୁତ ନାହିଁ । ସେଦିନେ
ମୋତେ ଅଜା ଭୁଲାଇ ଦେଉଚୁ, ନା ? ସୁରମା ତାକୁ ଖୁବ୍ ନଇଁ
ଗଳାରେ କଅଁ କେଇ କହିଲା—ନାଲୋ ! ଏଥର ନିଶ୍ଚେ ଦେବି
ତୁ ଦେ ।

ଆଶା ମୁହଁଟାକୁ କହିଲା—ମୋ ବ୍ଲାଉଜ ଭିତରୁ ନେ
ସୁରମା ତା ବ୍ଲାଉଜ୍ ବୋତାମ ଗୁଡ଼ିକ ଖୋଲି ତା' ଭିତରୁ ଚିଠି
ଖଣ୍ଡିକ ଟାଣିକି ବୋତାମ ମାରିଦେଲା । ଆଶା ଦାଣ୍ଡ ଆଡ଼େ ଯାଉ
ଯାଉ ପୁଣି ଡାକଦେଇ କହିଲା—ଅପା, ଏଥର ନ ଦେଲେ
ଜାଣିଥା ।

ସୁରମା ଗୋଟାଏ ଖାତା ମେଲାଇ ତା' ଭିତରେ ଚିଠିଟା
ଖୋଲି ଧରି ବେଶ ଖୁସି ମନରେ ପଢ଼ିବାକୁ ଆରମ୍ଭ କଲା ।

ଶୋଇଲାଘର
ତା ୧୬-୬-୩୯

ସ୍ନେହର ସୁରମା,

ତମ ପାଖକୁ ଚିଠି ଖଣ୍ଡିଏ ଲେଖିବି ବୋଲି ଦିନ ଭିତରେ
କେତେଥର ଯେ କଲମ ଧରେ, ତା' ମୋ ଛଡ଼ା ତମେ ବିଶ୍ୱାସ କରି
ପାରିବ ନାହିଁ । ଚିଠି ଲେଖିବାକୁ ଆରମ୍ଭ କଲାବେଳେ ଆପେ
ଆପେ କଲମ ମୁନ ଅଟକି ଯାଏ, ଭାବେ—ଜୀବନର କେଉଁ କଥା
ତମ ପାଖକୁ ଆଗ ଲେଖିବି । ତୁମ ଆଗରେ ମନର ଯେତେ କଥା

କହିବାର ଅଛି, ତାହା କଥାବାର୍ତ୍ତା ଛଡ଼ା କାଗଜ କଲମରେ ଲେଖି ହେବ ନାହିଁ। ତୁମର ସେ ସୁନ୍ଦର ମୁହଁଟି ଦେଖିଲା ଦିନୁଁ, ତୁମର ସେ ଭସାଣିଆ ଆଖି ଦୁଇଟି ଦେଖିଲା ଦିନୁ ମୁଁ ପାଗଳ ହୋଇଛି। ସେଇ ଦିନଠାରୁ ମୋର ମନର ଅବସ୍ଥା ଯେ କ'ଣ ହୋଇଛି, ତା' ମୋ ଛଡ଼ା କିଏ ଜାଣିବ ! ଦୁନିଆରେ କିଏ ଯଦି ଜଣେ ଅନ୍ୟ ଜଣଙ୍କ ଅନ୍ତର ଚିରି ସବୁ କଥା ଦେଖି ପାରୁଥାଆନ୍ତା, ଆଉ ତୁମେ ଯଦି ମୋ ଅନ୍ତର ଚିରି ଦେଖି ପାରନ୍ତ, ତାହାହେଲେ ତୁମେ ବିଶ୍ୱାସ କରନ୍ତ, ମୁଁ ତୁମକୁ କେତେ ଭଲପାଏ।

ତୁମକୁ ଦେଖିଲା ଦିନୁ ତୁମ ମୁହଁଟିରେ ଛବି ଆଖି ଆଗରେ ଅଛି। କେତେବେଳେ ଯେ ଅନିଦ୍ରା ହୋଇ କେତେ ଯେ ଆଖିର ଲୁହ ନୁହେଁ ଅନ୍ତରର ଅଶ୍ରୁ ଢାଳିଛି, ତାହା କେବଳ ଦେଖିଛନ୍ତି ଟେବୁଲ ଉପରର ବିଛଣା, ଉପର କାନ୍ଥ, ଅନ୍ଧକାର ରାତି। ଶେଷରେ ମୋର ଏତିକି ମିନତି, ତୁମେ ଯଦି ମୋତେ ଅଳ୍ପଟିକେ ଭଲପାଅ, ତାହାହେଲେ ମୋତେ କେଉଁଠି ଦେଖାଦିଅ। କେବଳ ଆଖିର ଦେଖାରେ, ଚିଠିପତ୍ର ଦ୍ୱାରା ମୁଁ ଆଉ ଥୟ ହୋଇ ରହି ପାରିବି ନାହିଁ। ଆଜି ଏଣା ହାତରେ ଚିଠି ଲେଖି ସବୁକଥା ଜଣାଇବ। ଏତେ ଗୁଡ଼ା ପାଗଳଙ୍କ ପରି ଲେଖିଲି ବୋଲି କିଛି ଭାବିବ ନାହିଁ। ଶୀଘ୍ର ଚିଠି ଦେବ। ଏ ଚିଠିଟା ଚିରି ଫୋପାଡ଼ି ଦେବାକୁ ଅନୁରୋଧ।

ତୁମର

ମୁଁ

ସୁରମା ଗଟି ଖଣ୍ଡିଏ ଏକା ନିଶ୍ୱାସରେ ପଢ଼ିସାରି, ପୁଣି ଥରେ ମୂଳରୁ ପଢ଼ିଲା ବେଳକୁ ଗୁରୁବର ଆସି ଡାକିଲେ—ଦେଇ ଇସ୍କୁଲବେଳ ଅସିହେଲାଣି, କୁଣ୍ଡରେ ପାଣିପଶିଛୁ ଗାଧୋଇବକୁ ଆସନ୍ତୁ । ସୁରମା ଟିକିଏ ବିରକ୍ତ ହେଲା, ପରେ କହିଲା—ମୁଁ ଅଜି ସ୍କୁଲକୁ ଯିବନାହିଁ । ମୋ ଦେହ ଖରାପ, ଅଜ ଟିକିଏ ପରେ ଗାଧୋଇବି, ତୁ ଯା । ଗୁରୁବରଟି ଚୁପ୍ ହୋଇ ଅନ୍ୟ କାମ କରିବା ପାଇଁ ଗୁଲିଗଲା ।

ସୁରମା ବୁଝିଲା ମନକଥା ଅଜି ଜାଣି ପାରିଛୁ ବୋଲି ତାର ଛାତି ଆନନ୍ଦରେ ଡିଆଁସି ଉଠୁଥାଏ । ରଫ୍ ଖାତାରୁ କାଗଜ ଚିରେଇ ଚିଠି ଖଣ୍ଡେ ସଙ୍ଗେ ସଙ୍ଗେ ଲେଖି ଦେବା ପେନ୍‌ସିଲ୍‌ଟା ଧରି ଅରମ୍ଭ କରୁଛି, ଜଷା, ନବୀ ଦୁହେଁ ଯାକ ଘର ଭିତରକୁ ପଶି ଅସି କହିଲେ—ତୋଟଦେହ କ'ଣ ହେଲା କହେ

ସୁରମା ରଫ୍ ଖାତାଟା ମୁହଁଦେଇ ବଣ୍ଟିଦେଇ କହିଲା—ମୁଣ୍ଡଟା କାଲିଠାରୁ ଟିକିଏ ବଥାଉଛି । ଦେହଟା କାହିଁକି ଭଲ ଲାଗୁନାହିଁ । ଛଟିଏ କଏ କହିଲା—ଉଷାଅପା, ମୋ ଦେହ ଭଲ ନାହିଁ ବୋଲି ? ଉଷା କହିଲା—ପଢ଼ିଅ ପାଇଁ କହୁଛି, ସୁରମା ଦେଇଙ୍କୁ ଜର । ତିନି ଭଉଣୀ ଯାକ ଖେଁ ଖେଁ ହୋଇ ହସି ଉଠିଲେ । ତା' ପରେ ସୁରମା କହିଲା—ନବୀଅପା, ମୋ ଲେଖିଥିବା ବହିଟା ବଟୁ ପାଖରେ ଅଛି, ବୋଉଙ୍କୁ ମାଗି ଅଣିବୁ ।

ହାଣ୍ଡ ଦୁଆର ମୁହଁରେ ଗାର୍ଲସ୍କୁଲ ଗାଡ଼ି ପେଁ ପେଁ କଲା ଉଷା, ନବୀ, ଅଶା ତିନିଏ ଅଗ ପଛ ହୋଇ ମଟରରେ ଚଢ଼ିଲେ ସୁରମା ଦୁଅର ମୁହଁପାଏ ଅସିଲା, ତାର ସାଥୀ ମାନଙ୍କୁ ଦେଖି

ହସି କହୁଲ—ମୋ ଦେହ ଆଜ ଭଲ ନାହିଁ, ମୁଁ ଯିବି ନାହିଁ । ମଠରୁ ଗୁଲିଲ ତା' ପଥରେ ।

ତରୁଣୀମାନେ ସ୍କୁଲ୍‌କୁ ଗୁଲିଯିବାରୁ ସୁରମା ଶାନ୍ତରେ ନିଃଶ୍ୱାସ ମାରିଲା । ଗାଧୋଇବା, ଖାଇବା ତେଉଁଥିରେ ତା' ମନ ଲାଗୁ ନ ଥାଏ । ବୋଉ ବଡ଼କ୍ତ ହେବେ ବୋଲି ଭୟରେ ଗାଧୋଇ, ଯାହାତାହା ଗଣ୍ଡେ ଖାଇ ଉପରକୁ ଆସିଲା । ଶରତବାବୁ ଅଧଘଣ୍ଟା ପରେ ମଠରୁ ନେଇ କଚେରୀକୁ ବାହାରି ଗଲେ । ଗୋଷ୍ଠୀଟାରୁ ଗହଳ ଚହଳ କମିଗଲା ।

ସୁରମା ଖଟ ଉପରେ ବସି କେତେ କ'ଣ ଭାବୁ ଭାବୁ ଆଖି ଦି'ଟା ମାଡ଼ି ଆସି ପଡ଼ିଲା । ତକିଆଟା ମୁଣ୍ଡତଳେ ଦେଇ ଶୋଇ ପଡ଼ି, ପୁଣି ଉପରକୁ ଅନାଇଁ ଭାବନାର ସୂଅ ଚଳାଇ ଥାଏ । ଭାଲି ଗୁଡ଼ ଗୋଟାକ ଯାଇ ଶୂନ୍ୟଟାରେ ଅନ୍ତର୍ଦ୍ଧାନ ହେଲା । ଇମିତି ଉପରକୁ ଅନାଇଁ ଅନାଇଁ କେତେବେଳେ ଯେ ତା' ଆଖିକୁ ନିଦ ଆସି-ଗଲା—ସେ ଜାଣିନାହିଁ ।

ଅନେକ ସମୟପରେ ହଠାତ୍ ତା ନିଦଟା ଭାଙ୍ଗିଗଲା । ବାହାରକୁ ଆସି ବାରାଣ୍ଡା ବୈଠକଖାନାକୁ ପଶିଯାଇ ଘଡ଼ିଟାକୁ ଅନାଇଁ ଦେଖିଲା, ଦୁଇଟା ବାଜିଲାଣି । ତରତର ହୋଇ ମୁହଁଟାକୁ ଧୋଇ ଦେଇ ଖଟଉପରେ ଯାଇଁ ବସିଲା । ପେନ୍ ଖାତାଟି ଧରି ଆରମ୍ଭ କଲା ।

ସ୍ନେହର,

ଗଟିଏ ଶ୍ରେଣୀ ପଢ଼ି ମୋତେ ଯେତିକି କାନ୍ଦମାଡ଼ିଲା, ସେତିକି ହସ ମାଡ଼ିଲା । କେଉଁ ରୂପ ଦେଖି ମୋ' ମୁହଁ ଆଜି

ଅଖିରୁ ଏତେ ପ୍ରଶଂସା କରୁଛ ? ମୋ ଭଳି କଦର୍ଯ୍ୟ ଦୁନିଆରେ ଆଉ କେହି ଥିବେକି ନାହିଁ ମୋର ସନ୍ଦେହ । ଏ କଥା ଲେଖି ଆପଣ ମୋତେ ଭାରି ଲଜ୍ଜା ଦେଇଛନ୍ତି ।

ଆପଣ ଚିଠିରେ ଲେଖିଛନ୍ତି—"ଆପଣଙ୍କ ମନରେ ଯେତେ କଷ୍ଟ, ତାହା ଆପଣଙ୍କ ଛଡ଼ା ଆଉ କେହି ବୁଝି ପାରିବେନାହିଁ ।", ଅଚ୍ଛା, ଆଉ କ'ଣ କାହାମନରେ କଷ୍ଟ ହୁଏନାହିଁ ? ଆଖିରୁ ଲୁହ ଗଡ଼େ କି ନାହିଁ, ସେ କଥା ମା' କଟକଚଣ୍ଡୀ ଜାଣନ୍ତି । ଆପଣ କୁଆଡୁ ବୁଝିବେ ?

ଚିଠିରେ ଲେଖିଛନ୍ତି ଏକୁଟିଆ କୋଉଁଠି ଦେଖାହେବ ବୋଲି । ମୋର ଗୃହ କ'ଣ ? ଆପଣତ ଦେଖୁଛନ୍ତି ଘରେ ଗୃହ ଗୁରୁଜନ ଭଉଣୀ, ବାପା, ବୋଉ, ଗୁରୁଜନ ଚାକର କେତେ । ଆଉ କେତେବେଳେ ସୁବିଧା ହେବ ? କୋଠାଛାତ ଉପରକୁ ଗଲେ କାଳେ କୁଆଡ଼େ ଅମେ ଅନାଇବୁ, ସେଥିପାଇଁ ବାପା ଅମକୁ ଉପରକୁ ବେଶି ଯିବାକୁ ମନା କରିଛନ୍ତି ।

ମୁଁ ତ ଏସବୁ କଥା କିଛି ଜାଣେ ନାହିଁ । ଆପଣ ଯାହା କହିବେ ଆପଣଙ୍କ କଥା ନିଶ୍ଚୟ ମାନିବ । କେଉଁଠି, କିପରି କେତେବେଳେ ଦେଖାହେଲେ ସୁବିଧାହେବ, ସେ କଥା ଆପଣ ଭାବ ଆଗେ ମୋତେ କହନ୍ତୁ । ମୁଁ ଏସବୁ କଥା କ'ଣ ଜାଣେ । ଆପଣ ଯାହା କହିବେ ମୁଁ କ'ଣ ତାହା ଏଡ଼ିଦେବି ? ଆଶା କାଲି ସକାଳେ ଗଲେ ତା' ହାତରେ ଚିଠି ଦେବେ । ଚିଠିରେ ଯାହା ଦୋଷଥିବ କ୍ଷମା କରିବେ । ନମସ୍କାର ।

ଆପଣଙ୍କର
ଜଣେ ହତଭାଗିନୀ

ସୁରମା ଚଟି ଖଣ୍ଡିକ ଅଳ୍ପ ଥରେ ପଢ଼ି ସାଙ୍ଗିଙ୍କୁ ଉକିଆ ଉଠେଇ ରଖି ଦେଇ ପୁଣି ଶୋଇପଡ଼ିଲା ।

ଚାରିଟାବେଳେ ଆଶା ସ୍କୁଲରୁ ଫେରି ଡାକିଲା—କଲୋ ସୁରମାଅପା, ଏତେ ବେଳ ଯାଏ ଶୋଇଛୁ ନା ! ସୁରମା ଉଠି ବସିଲା । ଆଶା ବହି ରଖି ଦେଇ ସୁରମାକୁ ପଚାରିଲା—ହେଇ, ପୁଷ୍ପାପି କୁଆଡ଼େ ଯାଇଛନ୍ତି ଅପା ? ସୁରମା କହିଲା—ହରିବାବୁଙ୍କ ଘରକୁ ବୁଲିବାକୁ । ଉକିଆ ତଳୁ ଚଟିଟା ବାହାର କରି ଆଶାକୁ ପାଖକୁ ଡାକି ବଡ଼ ଆଦର କରି କହିଲା—ଏ ଚଟିଟା ନେଇ ଯା, ତୋ ରାଜୁଭାଇଙ୍କୁ ଦେଇ ଆସିବୁ । ମୁଁ ତୋ ପାଇଁ ବାକ୍‌ସରୁ ରୁମାଲ ବାହାର କରୁଛି ।

ଆଶା କିନ୍ତୁ ନକହି ଚଟିଖଣ୍ଡିକ ନେଇଗଲାବେଳେ କହିଲା—ଅପା, ଉଷାଅପା ଖୋଜିଲେ କହିବୁ ମୁଁ କୁନା ପାଖରେ ଅଛି । ଆଶା ରାଜପାଖକୁ ଯାଇଁ ତା' ଟେବୁଲ ପାଖରେ ଠିଆ ହେଲା । ରାଜ ପଚାରିଲା—ପଢ଼ିବାର ଅଛିକି ଆଶା ଦେଇ ? କେଉଁ ପାଠ ପଢ଼ୁଛ ?

ଆଶା ମିଚ୍ଛିମିଚ୍ଛିକା ରାଉଦେଇଲା—ଭାରି ଫାଜିଲ ରାଜୁଭାଇ ମେ । ମୋତେ ଚଢ଼ାଉଛ, ଦେଖିବ ତମ ଚଟି କିମିତି ଚିର ଫାପାଡ଼ି ଦେବ ? ସେଇଠୁ ରାଜ ତାକୁ କୁଣ୍ଢାଇ ପକାଇ ଦେଲା ଚଟିଟି ତା' ହାତରୁ ନେଇଗଲା । ଆଶା ଟିକିଏ ରହି କହିଲା—ମୁଁ ଯାଉଛି ରାଜୁଭାଇ, ଡେରି ହେଲଣି ।

———

ସେଦିନ ସୁରମା ଶଠିଖଣ୍ଡ ପଢ଼ିସାରି ରାତର ଆନନ୍ଦ
ସୀମା ନ ଥାଏ । ଦଶହରାରୁ ଫେରି ସନ୍ଧ୍ୟା ବେଳେ ଗୋଟାଏଁ ବ
ଗାଡ଼ିରେ କଟକଚଣ୍ଡୀଙ୍କ ପାଖକୁ ଯାଇଁ ଫୁଲମାଳ, ଘିଅଦୀପ ବସା
ଟଙ୍କାକର ଖୀରମୋହନ ଭୋଗଦେଲା । ତା'ପରେ ମା'ଙ୍କ ଚ
ତଳେ ମୁଣ୍ଡ ଲଗାଇ ଗୁଣୁ ଗୁଣୁ କରି କହିଲା— ହେ ମା, ଜଗ
ଜନନୀ, ସତେ ଯଦି ଥିବୁ—ମୋ ମନକଥା ବୁଝିବୁ । ତୁ ମୋ
ଆଶା, ତୁ ମୋର ଭରସା ।

ପୁଣି ମା'ଙ୍କ ରାଖଣର ମାନସିକ ରଖି, ସେଡ଼ୋ
ଗାଡ଼ିରେ ଚଢ଼ିଲା । ବାଟରେ ଆସୁ ଆସୁ ତାର ଅଭିସାଙ୍ଗ
ନାଥକୁ କହି ଦେଇଥିଲା—ତୁ ତୋର ଗ୍ରାମଫୋନ ଓ ରେ
ଗୁଡ଼ା ନେଇ ଚାଲିଲ ଆ । ପ୍ରାଣନାଥ କହିଲା— ଆଜି ତୋର
କରେ ? ଭାରି ମନ ଖୁସି ହେଉଛି । ଅଚ୍ଛା ତୁ ଯା, ମୁଁ ଅର
ପନ୍ଦରମିନିଟି ଛୁଡ଼ ଯାଉଛି । ସେଇ ଗୁଲ ଅସିଲ ।

ଘରେ ଘରେ ଆଲୁଅ ଜଳିଲା । ରାଜ ରୋଡ଼େଇ
ଗୁଡ଼ର ଛୋଟାକୁ ଛଟକୋଣ-ଘର ବନ୍ଦ କରି ଦେଇ ଆ
ଉପରେ ବସିଛି, ପ୍ରାଣନାଥ ଦୁଆର ମୁହଁରେ ଡାକିଲା-
ଯାଇଁ କବାଟ ଫିଟାଇ ଦେଲା ।

ତା'ପରେ ଦୁଇବନ୍ଧୁ ଯାଇଁ ଖଟ ଉପରେ ବସିଲେ । ପ୍ରାଣନାଥ ଗ୍ରାମୋଫୋନ ଖୋଲୁଛି, ରାଜ ରେକର୍ଡ଼ ବାଛି ବାଛି ଗଣ୍ଡେ ଧରି ପଚାରି କହିଲା—ଏଖଣ୍ଡ ଲଗାଉ । ପ୍ରାଣନାଥ କହିଲା—ସେ ଟା କି ଗୀତ କରେ ? ରାଜ କହିଲା—ଆରେ ଆଗେ ଲଗା, ବାଜିଲେ ଜାଣିବୁ ନା । ପ୍ରାଣନାଥ ଟିକିଏ ହସି ଲଗାଇବାନରେ ରେକର୍ଡଟା ପୋଛିଦେଇ ଚଢାଇ ଦେଲା । ବାଜିଲା—

"ଖେଳା ଖେଳା ଖଞ୍ଜନାକ୍ଷୀ
କି ସା-ହା-ସ ଦଳରେ
ଖସ୍ପ ଛୁ ହେଲୁରେ—"

ରେକର୍ଡ଼ ବାଜି ଗଲା । ରାଜ ଚଷମାଟି ଟେବୁଲ୍ ଉପରେ ରଖିଦେଇ ଆନନ୍ଦରେ ହସି ହସି ହାତଘୁଞ୍ଚିକି ମାରୁଥାଏ, ପ୍ରାଣନାଥ ବି ତାଳି ମାରି ଦେଉଥାଏ ।

ଏ ଖଞ୍ଜାର ଗୀତ ସେ ଖଞ୍ଜାର ସମସ୍ତଙ୍କ କାନରେ ବାଜିଲା; କିଏ ଜାଣେ ନ ଜାଣେ, ଗୀତର ମରମ ବୁଝିମା ବୁଝିଲା । ମନେ ମନେ ଥାଳି ଦେଉଥିବା ପରମମାଉଁଲା, ଦେଖିକି ବି ହସମଉଲା । ମନରେ ଠିକ୍ କରିଥାଏ, ଏ ଗୀତର କଥା ଥରେ ତାଙ୍କୁ ପଚାରିବ ଯେ—

ଗୋଟା ପରେ ଗୋଟା ରେକର୍ଡ ବଜା ଗଲୁଥାଏ । ଅନେକ ସମୟ ପରେ ପ୍ରାଣନାଥଙ୍କୁ ନିଦ ମାଡ଼ିବାରୁ ସେ କହିଲା—ରାଜୁ, ବନ୍ଦକର । ଅନେକ ରାତି ହେଲାଣି । ରାଜ କହିଲା—ଅଚ୍ଛା ଥାଉ ।

ତା'ପରେ ଝିଅ ପିଅ ଗଲିଲା । ହାତ ଧୋଇ ସାରି ଦୁଇ ବନ୍ଧୁ ସିଗାରେଟ୍ ଖଣ୍ଡେ ଲେଖାଁ ଲଗାଇ, ଖୁସି ଗପ କରୁ କରୁ

ପ୍ରାଣନାଥ କହିଲା — ଅରେ ବା; ମୁଁ ତ ଅସଲ୍ କଥା ପାଶୋରି ଯାଇଥିଲି । ଏତେ ମନ ଖୁସି କାହିଁକି, କାହିଁକି ଆଜ ଖାଇବା ପିଇବା ପାଇଁ ଡାକିଲୁ, କିଛି କହିଲୁ ନାହିଁ ତ ?

ରଜ ଲୁଗା କାନରେ ଚଷମାଟା ପୋଛୁ ପୋଛୁ ମୁରୁକି ହସା ହସି କହିଲା— ଅଚ୍ଛା କହିବ, ଝୋଟେ କନ୍ତୁ ଆଜ ନୁହେଁ, ପରେ । ପ୍ରାଣନାଥ ଗୁମ ମାରି ମୁରୁକି ହସି କହିଲା— କଥାଟା ବୁଝା ପଡ଼ିଗଲା ଯେ, ସେଦିନ ଯେଉଁ କଷପୂରେ ଝିଅଟିଏ କହୁଥିଲୁ ତ ? କନ୍ତୁ-ଦେଖ ରଜ, ଝିଅଟିଏ ସାବଧାନ ହେବ; ନଚେତ୍ କେତେ ବେଳେ କେଉଁ କଥା ଭାଇ ! ଅଚ୍ଛା ଶୁଣ, ମତେ ବ ନିଦ ମାଡଲଣି । ପୁଣି ଗୋଟାଏ ବଡ଼ ଭୋଜି ଖାଇବାର ବାସନା ରହିଲା । ପ୍ରାଣନାଥ ଜଠି ଠିଆ ହେଲା । ରଜ ବସ୍ତା ଘରପଟେ ଆସି ବଳାଇ ଦେଇଗଲା ।

ସେତେବେଳକୁ ଏଗାରଟା ବାଜିଲଣି । ଗୁରୁକରଟୋକାଟି ଆଉ ଘରେ ଖାଇ ବସିଥାଏ । ରଜ କାଗଜ କଲମ ଧରି ଆରମ୍ଭ କଲା —

ସ୍ନେହର ସୁକୁ

ତମ କଥଁ ଲହାତ, କଥଁ ଲମନରୁ ଶଠି ଖଣ୍ଡି ପାଇ ଯେ ମୁଁ ଆଜ କ ଶାନ୍ତ ପାଇଛି, ତାହା ଗୋଟାଏ ମୁହଁରେ କହି ପାରିବି ନାହିଁ, କ କାଗଜ କଲମରେ ଲେଖି ପାରିବି ନାହିଁ ! ଆଜ ଏତେ ଦନ ପରେ ବୁଝିଲି, ତମେ ଭାରି ସରଳ, ଆଉ ତୁକୁତମ୍ଭ ମୋତେ ଭଲ ପାଅ । ମୁଁ ବୁଝୁଛି ଦେଖା କରିବାରେ ତମକୁ କେତେ ଅସୁବଧା । ତଥାପି ଦେଖା ହେବ ତ ?

ରାତି ବାରଟା ପରେ, ସମସ୍ତେ ଖାଇ-ପିଇ ଶୋଇଲେ ତୁମେ କ'ଣ କରିବ ନା, ତୁମ ଶୋଇବା ଘର ଅଗ୍ନିକୋଣ ଅଣ୍ଡି ଥିବ ଥିବ ବାଡ଼ିକବାଟ ଖୋଲି ପଛାକୁ ଆସିବ । ଆମ ବାଡ଼ି ତୁମ ବାଡ଼ି ମଝିରେ ଯେଉଁ ଗୋଟ ଦାଚେସ୍ତ ଅଛି ସେଇଟିକୁ ଆସିଲେ ଦେଖା ହେବ । କଳାଲୁଗା ଛଡ଼ା ଧୋବଲୁଗା ଜମାରୁ ପିନ୍ଧିବ ନାହିଁ । ମୁଁ ଭାବୁଛି, ପଅର ଦିନ ଜାଗର ଅଛି । ତୁମେ ସବୁ ବୋଧହୁଏ ଜାଗର ଦେଖିଯିବ । ଫେରି ଆସିଲେ ସମସ୍ତେ ହାଲିଆ ହୋଇ ଶୋଇ ପଡ଼ିବେ । ତମେ ସେହିଦିନ ରାତି ଦୁଇଟା ବେଳେ ସେଇଠିକି ଆସିବ । ମୁଁ ଆଗରୁ ସେଇଠି ଅପେକ୍ଷା କରିଥିବ ।

ମୁଁ ଆଜ୍ଞା ଚଣ୍ଡୀଙ୍କ ପାଖରେ କେତେ ଜଣାଉଛି, ତୁମକୁ ପାଇବା ପାଇଁ । ଯେଉଁ ଦିନ ଠାକୁର କରିବେ—ତୁମର ସେ ଗୋଟ ଗୋଟ ପାଦ ଦୋ'ଟି ଏ ଘରେ ପଡ଼ିବ, ତୁମର ପଣତକାନି ଘରେ ଦୁଆରେ ଫର ଫର ହୋଇ ଉଡ଼ିବ, ସେଦିନ ଏ ମାଟି-ଗୋଡ଼ି ଦୁଆର ଉଲସି ଉଠିବ । କାନ୍ଥ ବାଡ଼ ହସି ଉଠିବ । ମୁଁ ସେଦିନ ଦୁନିଆକୁ ଭୁଲି ଯିବି । ମୁଁ ସିନା ଦିନ ରାତି ତୁମକୁ ଏତେ ଭାବେ, ତୁମେ କ'ଣ ଇମିତି ମୋତେ ଭାବ ? ଠାକୁରଙ୍କୁ ଡାକ । ମୋ ମନରେ କାହିଁକି ପରତେ ହେଉ ନାହିଁ । ମୋ ଭଳି ଗରିବଟାକୁ ବା ଭାବିବ କାହିଁକି ?

କାଲି ରାତିରେ ଖାଇବସିଲା ବେଳେ ତୁମ କଥା ମୋର ମନେ ପଡ଼ୁଥାଏ । ଭାବୁଥାଏ—ମୋର ଆଗରେ ବସି ତୁମେ କେତେ କ'ଣ ଗପନ୍ତ, ମୁଁ ଶୁଣନ୍ତି । ବେଳେ ବେଳେବି ତମକୁ

ଘୋଡ଼ାରେ ବସାଇ ଶୋଇଦଅନ୍ତୁ । ଛେଳିଙ୍କ ଆଜ ଘୁଷ ପାରୁ
ନାହିଁ—ଅନ୍ତରର କେଉଁ ନିଭୃତ କୋଣରୁ ବୋଧ ଉଠିଲା ।

କାଲି ସନ୍ଧ୍ୟାବେଳେ ଅଶାହାତରେ ଚିଠି ଲେଖି ମୋ
ସବୁ କଥା ଜଣାଇବ । ଅଙ୍କ ଘୁଷ ନିଦ ମାଡ଼ିଲଣି । ତୁମେ ଯୁ
ଏତେ ରାତରେ ମୋତେ ଆଜ୍ଞା ଦେଖନ୍ତ, ତାହାହେଲେ ଜାଣି
ଇମିତ ଗୋଟାଏ ରାତ ନୁହେଁ, କେତେ ରାତ ତୁମର କଥା ଭା
ଅନିଦ୍ର ହୋଇଛି; ଆଖି କଷା ପଡ଼ିନାହିଁ । ମୋ ଚିଠି ଦେଖି
ଖଣ୍ଡି ଚିରି ଫୋପାଡ଼ିଦେବ, ନଚେତ୍ ତୁମେ ଯେମିତି କା ସରଳ
ମନା, କେଉଁଠି ରଖିଦେଇ ଥିବ ଯେ ଖିଆଲ ନ ଥିବ । ଜି
କି ଆଜ କେଏ ଯଦି ପଢ଼ନ୍ତି, ତାହାହେଲେ ସର୍ବନାଶ ! ଚି
ଦେବ । ଏତିକିରେ ରହିଲି ।

ତୁମର
ଜଣେ କିଏ

ରାଜ ଚିଠିଖଣ୍ଡି ଲେଖିସାରି ଥରେ, ଦୁଇଥର ପଢ଼ିଲା
ତା'ପରେ ଗୋଟିଏ ଗୋଲାପି ଲଫାପାରେ ଚିଠିଖଣ୍ଡି ବନ୍ଦ କ
ରଖିଲା । ଘଣ୍ଟାକୁ ଚାହିଁଲା—ବାରଟା ବାଜି ଦେଇ ଯାଇଛି
ନିଦ ମାଡ଼ିଲଣି ।

ତହିଁ ଆରଦିନ ପୂର୍ବପରି ଅଶା ଫୁଲଡାଲିଟି ନେଇ ଫୁ
ତୋଳିବାକୁ ଆସିଲା ରାଜ ଚିଠି ଖଣ୍ଡିକ ତା' ହାତରେ ଭିତରେ
ପୂରାଇ ଦେଇ କହିଲା—ଅପାକୁ ଦେବୁ । ଅଶା ହସି ହସି
କହିଲା—ମୁଁ କ'ଣ ତୁମ ଚାକର ? ରାଜ କହିଲା—ନା' ଚାକ

ୁଲ୍ ଭାଙ୍ଗାର ?

ାହିଁକ ହେବୁ, ତୁ ତମା ରଣୀ ପରି ! ଆଶା ଚଉଡ଼ାଇ କହୁଛି—ୂପ୍, ଅଡ ଫାଳିଲ୍ ।

ସେଦନ ସୁରମା ଶଟି ଖଣ୍ଡିକ ପାଇ ତା' ଗୋଡ଼ ତଳେ ଲଗୁ ନଥାଏ । ମନଟା ଅନନ୍ଦରେ କୁଦା ମାରୁ ମାରୁ ହଠାତ୍ ଥମି ଯାଉଥାଏ ଗୋଟାଏ ଅଜଣା ଉପୁରେ । ସତ ଦୁଇଟାବେଳେ ଘରୁ କବାଟ ଫିଟାଇ ବାହାରିବ କମିତ, ବାର କବାଟ ଫିଟାଇ ପଦାକୁ ଆସିଲ ବେଳେ ଯଦ କଏ ପଛରୁ ଡାକି ଦେବ—ସୁରମା—କୁଆଡ଼େ ଯାଉଛୁ ? ତେବେ ସେତେବେଳେ ସେ କ'ଣ ଉତ୍ତର ଦେବ ? ଇମିତ ଦଣ୍ଡକେ କେତେ ଭାବନା ଆସି ପାଣି-ଫୋଟକା ପର ପୁଣି କୁଆଡେ ଦଣ୍ଡକେ ମିଳାଇ ଯାଉଥାଏ ।

ଉଷା ଅର ଘରୁ ଡାକୁଛି—ଅଁଳେ ସୁରମା, ଖାଇବୁ । ଗାଡ଼ି ଏଇକ୍ଷଣି ଆସିବ । ସୁରମା ତର ତର ହୋଇ ଶଟିଖଣ୍ଡି ତା' ସୁଟ୍‌କେଶରେ ପୁରାଇ ରୋଷେଇ ଘରକୁ ଗୁଲିଗଲା ।

ସେ ଦନ ଗୁରଟାବେଳେ ସୁରମା ସ୍କୁଲରୁ ଫେରି ତର ତର କରି ଖଣ୍ଡେ କାଗଜରେ ଲେଖି ରାଜ ପାଖକୁ ପଠାଇଦେଲା ।

ରାଜ କଚେରିରୁ ଫେରି କୂଅମୂଳେ ଗୋଡ଼ ଧୋଉଥାଏ, ଅଶା ଆସି କହିଲା—ରାଜ ଭାଇ, ତମ ବହିରେ ଗୋଟାଏ ଜନିଷ ରଖିଦେଇଛି, ନେବ । ମୁଁ ଯାଉଛି, କାଲି ଭରି ପଢା ଅଛି । ରାଜ ଗୋଡ଼ ହାତ ଧୋଇ ସାରି, ବହିଖଣ୍ଡିକ ଯାଇଁ ମେଲାଇ ଦେଖା-ଇଲା ସୁରମା ହାତର ଅକ୍ଷର । ଲେଖାଅଛି—

ସ୍ନେହର—

ଗତି ଝଣି ପଡିଲା । ଏତିକ୍ଷଣି ସମୟ ନ ଥିବାରୁ ତରତ କରି ଦୁ'ପଦ ଲେଖିଦେଲି, ରାଗିବେ ନାହିଁ । ଆପଣ ଯେଉଁକ ଲେଖିଛନ୍ତି, ମୁଁ ତାହା ନିଶ୍ଚୟ କରିବି । ତେବେ ଭଗବା ଯାହା କରିବେ । ମୋତେ ଭୁଲ ଭର ମାଡ଼େ । ଆପଣ ଅ ଅସି ଅପେକ୍ଷା କରିଥିବେ । ଯାଉଛି । ନମସ୍କାର ।

ତୁମର
ସ୍ନେହର

ଜଣେ ହତଭାଗି

ରାଜ ଚିଠିଖଣ୍ଡ ଥରେ ନୁହେଁ, ଦୁଇଥର ନୁହେଁ, ଅନେ ଥର ପଢ଼ିଲା । ଯେତିକି ପଢୁଥାଏ, ତାକୁ ସେତିକି ନୂଆ ଲାଗୁଥାଏ ।

ଲିଖିଅ ଗଣ୍ଡିଏ ଖାଇ ବିଛଣାରେ ଶୋଇଲା । ଦଣ୍ଡେ କେତେ ଭାବନା ଆସି କେତେ ମିଳାଇ ଯାଉଥାଏ । କାଲି ଜୀବନରେ ନୂଆ କଥା ଘଟିବ । ସେ ଯେତେ ଦଳେଇ ହେଲେ, ଏ ସ୍ୱପ୍ନରେ କାହାକୁ ସାମନା ହୋଇ ନ ଦେଖେ ନାହିଁ । କାଲି ଯେ ବେଳେ ସୁରମା ଆସି ତା ଆଗରେ ଠିଆହେବ, ସେତେବେ ପ୍ରଥମେ କ'ଣ ତାକୁ ସେ କହିବ ! - ପୁଣି ଭାବିଲା—ସୁ ଯେତେବେଳେ ଛନ ଛନ ହୋଇ ଥର ଥର ଅସି ତା' ପାଖ ଠିଆହେବ, ସେ ତା' ହାତକୁ ଧରି ମୁହାଇ ଖଟ ଉପରକୁ ଆଣି କହିବ ସୁରମା, ଅଜ ଡର ନାହିଁ । ଯେଉଁଥିପାଇଁ ମ ଦୁନିଆରେ ଡରେ, ସେ ଡର ମୋର ନାହିଁ । ଟେଲିପଢୁ

ଲୁଁ ତୁମେ ଯଦି ରାଜି ହୁଅ, ତାହାହେଲେ ଦାଣ୍ଡେ ଦାଣ୍ଡେ ମାଗି ପୋଷିବାକୁ ବି ମୋର ସାହସ ଅଛି । ଏ କଥା ଶୁଣି ରମା ତାର ବକ୍ଷ ଭିତରେ ଥାଇଁ ମୁହଁ ଉଠାଇ ଯୋଡ଼ା ନରମ ସ୍ୱରରେ କହୁଥିବ—ତୁମର ଯାହା ଇଚ୍ଛା । ମୋତେ ଯେଉଁ ଆଡ଼େ ନେବ ନିଅ, ମୁଁ କିଛି କହିବି ନାହିଁ । ସେଉଠୁ ରାଜା ଦେରି କରିବ ନା, ଦୁଇ ହାତରେ ସୁରମାର ଘନ ଚିକ୍କଣ ବାଳ-ଗୁଡ଼ିକୁ ଆଉଁସି ଦେଇ ଦେଇ ତାର ସେହି ଚିରସୁନ୍ଦର ମୁହଁଟିକୁ ଉପରକୁ ଉଠାଇବ । ସୁରମା ତା' ବକ୍ଷ ଉପରେ ଥାଇଁ ଗୋଟିପଣ ରହିଥିବ, ଆଉ ଅନ୍ଧାର ଭିତରେ ତାର ଛୋଟ ଛୋଟ ରଙ୍ଗିନ ଗୋଲାପି ଓଠ ଦୁଇଟି ଥରୁଥିବ, ଆଖି ଦୁଇଟି ବୁଜି ହୋଇଯାଇ-ଥିବ—ତା' ପରେ—ତା' ପରେ—ରାଜା ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ି, ବ୍ୟଥାଭରା ସ୍ୱରରେ କହିଲା ହେ—ମା'-ତୋର ଇ—ଚ୍ଛା !

ଇମିତ କେତେ ସମୟ କେତେ ଅଶାର ଦେଉଳ ଗଢ଼ି ଗଢ଼ି ଭାଙ୍ଗିବାର ଠିକଣା ନାହିଁ । ଗୁଡ଼ବାଟେ ଟୋକାଟି ଆସି କହିଲା—ବାବୁ, ବେଳେ ଢେର ସରିଲାଣି, ଖାଇବେ ଆସନ୍ତୁ । ରାଜା ଗୋଟାଏ ଖାମୋଖିଆଲିଙ୍କ ପରି ଉଠି ବସିଲା । କହିଲା—ଆଣ ! ଟୋକାଟି ଭାତ ବାଢ଼ିଦେଲା । ରାଜା ଅନ୍ୟମନସ୍କ ଭାବରେ ଖାଇଲା ।

ରାଜ ଦରଖିଆ ହେଲା ବେଳକୁ ଟୋକଟି ପଚାରିଲା—ବାବୁ, କାଲି ଜାଗର । ଏଇ ବଜାରରୁ ଅନେକ ଲୋକ ଧରଣୀଦେବୀଙ୍କ ପାଖକୁ ଯାଉଛନ୍ତି, ମୁଁ ଯିବି । ଘଡ଼ିଏ ରାତିକୁ ଫେରିବି ।

ଗଜ ଟିକିଏ ଗୁମ୍ ମାରି କହିଲା—ହଉ, ଯା, ମୋର
କାଲି ଉପାସ । ଗଲବେଳେ ପଇସା ଭୋଗ କରିବା ପାଇଁ ମ
ନେବୁ ।

ଘଡ଼ ପାହୁ ସକାଳ ହେଲା । ଝିଅଟିଏ ବେଳୁ ମାଇ
ନିଶିପେ ଗାଧୋଇ, ପେଡ଼ ସାଧରା ଲୁଗା ପିନ୍ଧି, ମହାଦେବ ଦର୍ଶ
ପାଇଁ ଗଲେଣି । ସବୁଦିନ ଗସ୍ତ ଅପେକ୍ଷା ଆଜି ଗସ୍ତଟା ବେ
ଲୋକ ଗହଳ ହୋଇଥାଏ । ଗଜ ଭୋରରୁ ଗାଧୋଇ ଗୁଳକର
ଭୋଗ କରିବା ପାଇଁ ଅଠଅଣା ପଇସା ଦେଲା, ତାପରେ ସାଙ୍ଗ
ହେଲେଟା ଧରି ବାହାରି ଗଲେ ଗୁରୁଅଡ଼େ ବୁଲି ମହାଦେବ ଦର୍ଶ
କରି ଆସିବାକୁ । ସବୁ ଠାକୁରଙ୍କ ପାଖରେ ମୁଣ୍ଡିଆ ମା
ଜଣାଉଥାଏ, ଆଜି ଦିନଟି କମିତି ଭଲରେ କଟିବ, ଯେପ
କିଛି ବିପଦ ଆପଦ ନ ପଡ଼େ ।

ବୁଲି ବୁଲି ଦଶଟା ବେଳକୁ ବସାକୁ ଫେରିଲା । କବାଟ
ଖୋଲି ଚେୟାର ଉପରେ ବସିଛି, ଅଣା ଫୁଲଡାଲଟି ଧରି ଅ
କହିଲା—ଇସ୍ ଭରି ମଣିଷତ ! ସକାଳୁ ଶୁଦ୍ଧ ହୋଇ ଗୁଳିଗଲ
ଦେଖା ଫୁଲ ତୋଳିବାକୁ ମୁଁ ପାଇଲି ନାହିଁ । ଆମେ କ'ଣ ଚୋ
ହୋଇଛୁ କି ତମର ଟଙ୍କାପଇସା ଚୋରି କରି ନେଇ ଯାଉଛୁ ?

— ଗଜ ଉଠିଆସି ହସି ହସି ତା ପାଖିରେ ହାତ ଦେ
କହିଲା—ଗଗନା ଲେ ମୋର ଦୋଷ ହୋଇଛି । କ୍ଷମାକରୁ ମୋ
ମନେ ନାହିଁ—ଛୋଟ ଫୁଲ ତୋଳା କଥା । ଅଣା ଫୁଲ ତୋଳ
ବାକୁ ଚିହ୍ନ ମୂଳକୁ ଗଲା । ଗଜ ବି ତା ପଛେପଛେ ଯାଇ ଉପ
ଡାଳରୁ ମୁଠି ମୁଠି କରି ଫୁଲ ତୋଳି, ତା ଡାଲାରେ ପୂର

ଦେଲା । ଅଣା ଫୁଲ ଚୋଳୁ ଥାଏ ରାଜ ତା ପାଖରୁ ଆସି ଏତେ ଖଣ୍ଡେ କାଗଜରେ ଲେଖିଦେଲା ।

ସାବଧାନରେ ଅସିବ ଡ଼ରବ ନାହିଁ । ମୁଁ ଅଗରୁ ଅପେକ୍ଷା କରିଥିବ ।

ଅଣା ଫୁଲ ଚୋଳ ସାରଲା ବେଳକୁ ରାଜ ତା ବ୍ଲାଉଜ ଭିତରେ ହାତ ପୂରାଇ କହିଲା—ଯୁ ଭିତରେ ଯେଉଁ ଜିନିଷ ରଖିଲୁ ତୁ ଖାଇବୁ ନାହିଁ ଅପାକୁ ଦେବୁ । ଅଣା ମିଛ ମିଛକା ରାଗ ଯାଇ କହିଲା—ଏତେ ଜିନିଷ ଦିଅନା ମା ! ଶିରୁ ଫଟାଫାଟି ଦେବଯେ—ତୁମ ମଙ୍କାଠା ବାହାର ଯିବ । ରାଜ କହିଲା—ହଉ ହଉ ସେଇତିକ ଥାଉ—ତୁ ଖାଇବୁ ଯା । ଅଣା ତାକୁ ଖଟେଇ ହୋଇ ପଳେଇ ଗଲା ।

ରାଜ ମନ ଆଉ ଘର ଦୁଆରୁ, ସାଙ୍ଗ ସାଥି କେଉଁଠି ଲାଗୁ ନଥାଏ । କେବଳ ଭାବୁଥାଏ ଦଣ୍ଡା କମିତ ଯିବ ରାତିଟା କମିତ ଆସିବ । କ୍ରମେ କ୍ରମେ ରାଜର ମନର ଗତି ସଙ୍ଗେ ସଙ୍ଗେ ସୂର୍ଯ୍ୟଦେବ ଦୁନିଆର ଜଞ୍ଜାଳ ସାରି ପଶ୍ଚିମ ଦିଗରେ ଲୁଚିଗଲେ । ସନ୍ଧ୍ୟାରାଣୀର ପଣତ ତଳେ ଗଛ ପତର ନଦୀ ପର୍ବତ ସବୁ ଘୋଡାଇ ହୋଇ ଗଲା । ଘରେ ଘରେ ଦୀପ ଲାଗିଲା । ଠାକୁର ଘର ମାନଙ୍କରୁ ଘଣ୍ଟା ଧ୍ୱନି ଉଠୁଲା ପଡିଲା । କେଉଁଠି କିଶୋରୀ ନିଜ ପଣତ କାନି ତଳେ ଦୀପଟି ଘୋଡାଇ ତଳସୀମୂଳେ ଥୋଇ ବୃନ୍ଦାବତୀଙ୍କ ପାଖରେ ତା ଦୁଃଖ ଜଣାଇ ଫେରିଲା । ଆଉ କେଉଁଠି ନବ କୂଳବଧୂ ଦୀପଟି ଥୋଇ ଲୁଗା କାନିକୁ ବେକରେ ଗୁଡେଇ ଦେଇ ଅକୁଳ ମନରେ ତାର ଦୂର ବିଦେଶୀ ସ୍ୱାମୀର

ମଙ୍ଗଳ କାମନା କରୁଥାନ୍ତି । ଆଜି ଜାଗର ବୋଲି ବଜାରଟା ଧୋ-ଧା ରେ କମ୍ପୁଥାଏ ।

ଶରତବାବୁଙ୍କ ବାଣ୍ଡରେ ମଟର ଘଡ଼ ଘଡ ହେଲା । ରାଜ ଭାବିଲା ବୋଧ ହୁଏ ତାଙ୍କର ସମସ୍ତେ ଜାଗର ଦେଖି ଯାଉଛନ୍ତି । ବାହାରକୁ ଆସି ଦେଖିଲା, ସତକୁ ସତ ସମସ୍ତେ ମଟରରେ ବାହାରୁଛନ୍ତି । ସେ ତର ତର ହୋଇ ଭଲ ଲୁଗା ପଞ୍ଜାବୀ ପିନ୍ଧି, ମଟର ପଛେ ପଛେ ସାଇକେଲ୍ ଚଲେଇଲା ।

ମଟରଟା ଠିଆ ହୋଇଗଲା ଅମରେଶ୍ୱରଙ୍କ ଦେଉଳ ଆଗରେ । ରାଜ ସାଇକେଲ କେଉଁଠି ଅଟକାଇଲା । ମଟରରୁ ବାହାରି ସମସ୍ତେ ଦେଉଳ ଭିତରେ ପଶିଲେ । ବାଟରେ ରାଜ ଆଖି ସଙ୍ଗରେ ସୁରମାର ଆଖି ମିଳିଗଲା । ତୁହେଁ ଟିକଏ ମୃଦୁକି ହସା ହସି ହୋଇ ଆଖି ଫେରାଇ ନେଲେ । ଅଶା ବି ଖଞ୍ଜି ଦେଖି ଲୋକ ଗହଳି ଭିତରେ ବଜ ପିନ୍ଧାକାନକୁ ଟିକିଏ ଠାଣି ଦେଲା ।

ଦର୍ଶନ ସରିଲା । ପୁଣି ଏମାନେ ମଟରରେ ଆସି ବସିଲେ । ମଟର ଚଳିଲା ଅନ୍ୟ ଆଡ଼େ । ରାଜ ଆଉ ତାଙ୍କ ସଙ୍ଗରେ ଗଲା ନାହିଁ । ଗୁଡ଼ିଆ ଦୋକାନରୁ ଭଲ କ୍ଷୀରମୋହନ ଟଙ୍କାକର ହାଣ୍ଡିରେ ପୂରାଇ ବସାକୁ ଫେରିଲା । ବାଟରେ ଅସୁ ଅସୁ ଭାବୁଥାଏ କ୍ଷୀରମୋହନ ନେଇ ସୁରମାକୁ ଆଦର କରି ଖୁଆଇବ ।

ବସାକୁ ଆସି ଦେଖିଲା ଶୁକରଟି ଲକଠଣ ଲଗାଇ ଢଙ୍ଗରେ ଧୋଇଗ ଖାଉଛୁ । ବାବୁଙ୍କୁ ଦେଖି ତର ତର ହୋଇ ଖାଇ ସରି କହିଲା--ବାବୁ, କ'ଣ ଖାଇଛନ୍ତି ? ଧବଳେଶ୍ୱରଙ୍କ ପାଦୁକ ଅଛି ପାଆନ୍ତୁ ।

ରାଜ କହିଲେ—ମୁଁ ତ ଜାଗରରେ କିଛି ଖାଏନା । ତେବେ ସରବତ ଗିଲାସେ ଆଣ । ଗୃହକର୍ତ୍ତ୍ରୀ ସରବତ କରି ଆଣିଦେଲେ ।

ରାଜ ସରବତ ପିଇସାରି ଖଟ ଉପରେ ବସିଲେ, କେମିତି ଦୁଇଟା ବାଜିବ ସେଇଥିପାଇଁ ମନଟା ଛଟପଟ ହେଉଥାଏ । ଘଣ୍ଟାକୁ ଅନାଇଲେ ମୋଟେ ଦଶଟା ବାଜିଛି । ହାତଅଙ୍ଗୁଠିରେ ଗଣିଲେ—ଏଗାର, ବାର, ଏକ, ଦୁଇ—ବାପାରେ କେତେ ସମୟ !

ପାଖରେ ଥୁଆ ହୋଇଥିବା ଅଇନାଟାକୁ ଅନାଇଲେ । ଉପାସରେ ତା ମୁହଁଟା କେମିତି ଦେଖାଯାଉଛି । ମୁହଁଟା ଶୁଖି ଯାଉ ନ ଯାଉ, ଦାଢି ଗୁଡ଼ାକ ଟିକିଏ ଗଜରି ମାରିଥାଏ । ରାଜ ହାତରେ ଦି ଥର ଉଣ୍ଡାଳି ପକାଇ ଭାବିଲେ— ନା, ସୁରମା ସଙ୍ଗରେ ଆଜି ପ୍ରଥମ ଦେଖା ହେବ । ଦାଢ଼ି ଗୁଡ଼ାକ କାଟି ନ ଗଲେ ନ ଚଳେ ।

ସେଇଠୁ ପାଣି ଗିଲାସେ ଆଣି ସାବୁନ ମାରି ଖିଅର ହେଲେ, ମୁହଁଟା ଭଲକରି ଧୋଇସାରି ତଉଲିଆରେ ପୋଛିଲେ । ସୁଟ୍‌କେଶରୁ କଲର୍‌ଲଗା, ସିଲ୍କ ପଞ୍ଜାବୀଟା କାଢ଼ି ପିନ୍ଧିଲେ । ମୁଣ୍ଡଟିକୁ କୁଣ୍ଡାଇ ମୁହଁରେ ପାଉଡ଼ର ମାରି ଅଗରୁ ଅତର ରୁମାଲରେ ଦି' ବୁନ୍ଦା ପକାଇ ବଡ ଠାଣିମାଣିରେ ଅଇନା ଆଗରେ ବସିଲେ । ଡେଡେହେଉଛି ଦେଖି ନିଜରୂପରେ ନିଜେ ଆତ୍ମହରା ହୋଇପଡ଼ିଲେ । ତା ପରେ ଘଡ଼ିଟାର ମିନିଟ କଣ୍ଟାକୁ ଅନାଇ ରହିଲେ, ଏଗାରଟା ବାଜିବାକୁ ତାଅମିନିଟ ବାକି ।

× × × ×

ଦୁଃଖମୟ ମନଟା କେଉଁଠି ଲାଗୁ ନଥାଏ । ସନ୍ଧ୍ୟା ବେଳଠାରୁ ଏତେ ବେଳଯାଏ କେତେ ଯାଗା କେତେ ମଣିଷ ସେ ଦେଖି ଅସିଲା, କିନ୍ତୁ କେଉଁ କଥା ତାର ମନେ ରହୁନି ନାହିଁ । ମଠର ଭିତରେ ଯେ କେବଳ ଘୁରୁଛି କପର ତାଙ୍କ ସଙ୍ଗରେ ଦେଖା ହେବ । ଅଜ ଅଗଙ୍କର ସେ ଯାଇଁ କ'ଣ କହିବ । ଏତକ ନୁହେଁ, ଯାହାର କୋଳଗହଳ ଭିତରେ ଅଖି ଫେରାଇ ସେ କେତେ ଖୋଜୁଛି ତାର ଚିହ୍ନା ମୁହଁଟିକୁ, କିନ୍ତୁ ଅମରେଶ୍ୱରଙ୍କ ଛଡ଼ା ଅନ୍ୟ କେଉଁଠି ପାଇନାହିଁ ।

ଯାଇତାଇ ଗଣ୍ଡିଏ ଖାଇ ଶୋଇବା ଘରକୁ ଅସିଲା । ଟେବୁଲଉପର ଘଣ୍ଟାକୁ ଅନାଇଲା ସାଢ଼େଏଗାରଟା ବାଜିଲାଣି । ଚେୟାର ଉପରେ ଯାଇଁ ବସିଲା, ମନର ଭାବନା କୂଳ ଅକୂଳ ମାଡ଼ି ଗୁଲୁଛି । ମନଟା ଛନ ଛନ । ଛାତିଟା ଉଠୁଥାଏ ପଡ଼ୁଥାଏ ।

କେତେ ସମୟପରେ ଘଡ଼ିଟାକୁ ଅନାଇଲା, ବାର ବାଜି ପାଞ୍ଚ ମିନିଟ । ସେଠୁ ଉଠି ଯାଇ ବିଛଣାରେ ଶୋଇଲା । ଦେହଟା ସନ୍ଧ୍ୟାବେଳୁ ଗରମ ହୋଇଯାଇଛି । ଯୌବନର ଉନ୍ମାଦ ନିଆଁ କେଉଁ ଦେଳ କୁହୁଳି ଉଠୁଛି, ଅଖି ବିଷା ପଡ଼ିବାକୁ ନାହିଁ । ଭାବଗୁଲୁଛି-ବାର କବାଟ ପିଠାଇ ଗଲାବେଳେ—ଯଦି କିଏ ଘରରେ ଉଠିବ, ଅଜ ବାର କବାଟ ମୁକୁଳା ଦେଖି ଚୋର ? ବୋଲି ପାଟି କରିବ, ତାହାହେଲେ ଅବସ୍ଥା କଣ ହେବ, ଠିକଣା ନାହିଁ । କେଉଁ ବାଟେ ଗଲେ କେହି ଜାଣି ପାରିବେ ନାହିଁ ଏଇ କଥା ଭାବୁଥାଏ ।

କେତେବେଳେ ଯାଏ ଭାବୁ ଭାବୁ ଠିକ୍ କଲା—ବୋଷଘର ପାଖେ ଗଲେ କବାଟ ଫିଟାଇ ବାହାରକୁ ଯିବ । ତା ଛଡ଼ା ଆଉ ସୁବିଧା ନାହିଁ ।

×        ×        ×        ×

ରାଜ ଘଡ଼ିର କଣ୍ଟାକୁ ଅନାଇ ଅନାଇ ଭାର ବିରକ୍ତ ଲାଗିଲା ଦୁଇଟା ବାଜିବାକୁ ଆହୁରି ଦୁଇଘଣ୍ଟା ବାକି । ଦିନଯାକ ଉପାସ ରହି, ଅଣ୍ଟିଟା ବି ମାଡ଼ି ମାଡ଼ି ପଡ଼ୁଥାଏ । ରାଜ ଭାବିଲା—ନା ଆଉ ବସି ପାରିବ ନାହିଁ । ଶୋଇ କରି ଚେଇଁବ, ୨ଟା ବାଜିଲେ ଉଠି ବାହାରକୁ ଯିବ । ମିନିଟ କଣ୍ଟାଟା ଯେତିକି ଟିକ୍ ଟିକ୍ ହେଉଥାଏ ରାଜ ମନଟା ସେତିକି କୁଦା ମାରୁଥାଏ ସେହି ସମୟକୁ ଭାବି !

ରାଜ ଉଠି ଠିଆ ହେଲା । ବାରରେ ପରିକ୍ରମା କରି ପୁଣି ଘରକୁ ଆସିଲା । ଯେମିତି ଲୁଗା ପଞ୍ଝାଙ୍କୋଟା ପିନ୍ଧି ତକିଆଟା ମୁଣ୍ଡ ତଳେ ଦେଇ ଉପରକୁ ଅନାଇଁ ଥାଏ । ଭାବୁଥାଏ—ସୁରମା ବୋଧହୁଏ, ଏଇକ୍ଷଣି କଳାଶାଢ଼ୀ ଖଣ୍ଡିଏ ପିନ୍ଧି ଅଇନା ଆଗରେ ଠିଆହୋଇ ମୁଣ୍ଡ କୁଣ୍ଡାଉଥିବ, ନଚେତ୍ ମୁହଁରେ ସ୍ନୋ ପାଉଡର ମାରି ହେଉଥିବ, ଆଉ ତାର କଥା ଭାବୁଥିବ । ସେ ଅଙ୍କ ନୂଆ ଛନ ଛନ ହୋଇ—

—ଆସିବ ବାହାରକୁ, ଏ ଯିବ ବାହାରକୁ । ପାଖା ପାଖି ହେବେ ହେଲାକ୍ଷଣି, ଯଦି ସେ ଲାଜରେ ଆଗକରି କଥା ନ କହିବ, ତାହା ହେଲେ ସେ ନିଜେ ଅଗତା' ହାତକୁ ଧରି ଧୀରେ ପାଖକୁ ଟାଣି ନେଇଁ ନେଇଁ କହିବ—ସୁରମା, ଏତେ ରାତିରେ ତମକୁ ଡର ମାଡ଼ିଲା ନାହିଁ, କେମିତି ଏକା ଆଇଲ ? ସୁରମା କିଛି କହିବ ନାହିଁ, ଲେଟେ ଶିଶୁଟି ପରି ତା ପାଖକୁ ଆଉକି ଯିବ । ତାପରେ—

—ରାଜ ପାଟେଶ୍ୱରୀଙ୍କୁ ଅନେକ ପଡ଼ ନିଜ ଗ୍ଲାନ ଅଙ୍କରୁ ସୁରମାଙ୍କୁ ଅଜଡ଼େଇ ଆଣି, ତାର ବାଳ ଗୁଚ୍ଛକୁ ଅଉଁସି ଦେଇ ଦେଇ ଆଦରବଶ ପଚାରିବ—କେମିତି ତୁମର ମନେପଡ଼ିଲା ମୋକଥା ? କେହି ଦେଖି ନାହାନ୍ତି ତ ? ସୁରମା ଭାରି ନରମ ଗଳାରେ ତଳକୁ ମୁଣ୍ଡ ପୋତି କହିବ —ନା । ତା'ପରେ ସେ କହିବ ସୁରମା, ମୋର ଗୋଟିଏ କଥା ରଖିବ ଯଦି କହିବି । ମୁଁ ବଡ଼ ସ୍ନେହରେ ତମପାଇଁ କେଇଟି କ୍ଷୀରମୋହନ ଆଣିଛି, ଖାଅ । ସୁରମା କିଛି କହିବ ନାଇଁ—ହସିବ । ରାଜ ସେଥିରୁ ବଡ଼ ଶରଧାରେ କ୍ଷୀରମୋହନ ଗୋଟିଏ ନେଇ ତା ପାଟିରେ ଦେବ । ଆଉ ଗୋଟିଏ ଦେଲା ବେଳକୁ ଯଦି ସୁରମା ଦାନ୍ତ ଚାପି କହେ—ନା, ଆଜ ଖାଇବି ନି । ସନ୍ଧ୍ୟାବେଳେ ଖାଇଛି, ଆପଣ ଖାଆନ୍ତୁ । ତେବେ ସେ ଆଦର କରି କହିବ ମୋ ରାଣ, ଏଇ ଗୋଟିକ ଖାଅ, ଆଉ ନ ଖାଇଲେ—ନାଇଁ ପଚେ । ଏତା ଭାବୁ ଭାବୁ ସେ ଚମକିପଡ଼େ, ଯଦି ସୁରମା ଶୋଇପଡ଼ିଥିବ ! ଭାବନାଟା ଥମିଯାଏ । ଛାତିଟା ଦପ୍ ଦପ୍ ପଡ଼େ ।

ଏମିତି ଭାବୁ ଭାବୁ କେତେବେଳେ ତା' ଆଖି ବୁଜି ମୁଦି ହୋଇଗଲା—ଆଉ ନିଦ ଆସିଗଲା, ସେ ଜାଣି ନାଇଁ ।

ସୁରମା ଖଟ ଉପରୁ ଉଠି ଅଗଣାକୁ ଆଇଲା । କୁଆଡ଼େ କିଛି ସ୍ୱର ଶବଦ ନାଇଁ । ଠିକ୍ ଏ ଅଡ଼କୁ ସାଡ଼କୁ ଚାହିଁ ଘରଭିତ-ରକୁ ଥରେ ଦଉଡ଼ାକୁ ଅନାଇଁଲା, ଗୋଟାଏ ବାଜ ପଦର ମିନିଟ । ମନଟା ଆଉରି ଛନ ଛନ ହୋଇ ଉଠିଲା !! କବାଟ କିଳଣିଟାକୁ

ଭଲ କରି ଦେଇ, ଟ୍ରଙ୍କ ଫିଟାଇଲା । ଭଲ କଳା ଟିଲିଡ ଶାଢ଼ୀ ଖଣ୍ଡିଏ ବାହାର କରି ପିନ୍ଧିଲା । ଚୌକି ଉପରେ ବସି ମୁଣ୍ଡ କୁଣ୍ଡାଇ, ମୁହଁରେ ଗୋଲାପି ପାଉଡ଼ର ମାରି, ତା'ପରେ ଅତର ପାଞ୍ଚ ଛଅ ବୁନ୍ଦା ଶାଢ଼ୀରେ ପକାଇ ଆଇନା ଆଗରେ ଠିଆହେଲା । ନିଜ ରୂପ ଦେଖି ନିଜେ ଭାବିଲା—ସେ ଭାରି ସୁନ୍ଦର ଦେଖା ଯାଉଛି, ଠିକ୍ ଗୋଟିଏ ସିନେମା ଛବି ପରି ।

ତା' ପରେ ପାଟିରେ ଦି' ଟା ଲବଙ୍ଗ ପକାଇ କାନ୍ଥ ପାଖକୁ ଯାଇଁ କାହା ଉଦ୍ଦେଶ୍ୟରେ ନମସ୍କାର କଲା । ମୁହଁ ଫେରାଇ ଘଣ୍ଟା-ଟାକୁ ଅନାଇଲା ଦୁଇଟା ବାଜିବାକୁ ୨୦ ମିନଟ ବାକି । ମନଟା ଆଉରି ଅଧୈର୍ଯ୍ୟ ହୋଇ ପଡ଼ିଲା । ଛାତିଟା ଜୋରରେ ଦପ୍ ଦପ୍ ହେଉଥାଏ । କବାଟ ପାଖକୁ ଆସି ସୁଇଚ୍ ମାରି ଆଲୁଅ ଲିଭା-ଇଲା । କଟକଚଣ୍ଡୀଙ୍କୁ ଡାକି ଆସ୍ତେ କବାଟ ଆଉଜେଇ ଆସି ପଦାରେ ଠିଆହେଲା । ନିଶା ସାଇଁ ସାଇଁ ଗର୍ଜୁଛି, ଗୃହ ଆଉ ଶୁନ୍ ଶାନ । ଉପରେ ଏଡ଼େ ବଡ ଆକାଶ, କୋଟି କୋଟି ତାରା । ଅନେକ ଦୂରରେ କେଉଁଠି ଗୋଟାଏ ରେଲଗାଡ଼ି ଧ'ଥର ଭୁକଭକ ହୋଇଗଲା । ସଡ଼କ ବରଗଛଟାରୁ ବାଦୁଡ଼ି ଦି'ଟା ଚେଁ ଚେଁ ହୋଇ କୁଆଡେ ଉଡିଗଲେ । ସୁରମା ଚମକି ପଡ଼ିଲା । ଦେହଟା ଚୋଟିପଣ ଥରୁଥାଏ । ରାତି ଦୁଇଟା ।

ଧନ ଧନ ହୋଇ ଗୋଡ଼ ଚିପି ଚିପି ଷ୍ଟେସନର ପାଖକୁ ଆସିଲା । ପାଚେରୀ ପାଖେ ୨ ଯାଉଛି, ହଠାତ୍ ପାଚେରୀ ଉପରୁ କ'ଣ ଗୋଟାଏ ଡେଇଁ ପଡ଼ିଲା । ସୁରମା ଛାଟ୍ କରି ଚମକିପଡ଼ି ପଛ ଆଡ଼କୁ ଦଶହାତ ଘୁଞ୍ଚିଆସି ଅନାଇଲା—କେହି ନୁହେଁ—ଭୂଆ

ବିଗୁଡ଼ିଛି । ସୁରମା ପୁଣି ଆଗକୁ ମାଡ଼ି ଚାଲିଲା । ଗଳି କବାଟ ପାଖରେ କ'ଣ ଭାବି ପଛକୁ ଟିକିଏ ଚାହିଁଲା । ତା'ପରେ କଳଣି-ଟିକୁ କାଢ଼ି ପଦାକୁ ଆସିଲା । ମନରେ ଯୌବନର ପିଶାଚ ଚେଇଁ ଉଠିଛି, ବିବେକର ଅଙ୍କାର ହାତ ତାକୁ ଟାଣି ରଖି ପାରୁନା ନାହିଁ, ଲଜ୍ଜା-ଘୃଣା ନ ମାନି ଚାଲିଲା, ରାଜ ତାକୁ ଯେଉଁଠି କହିଥିଲା ।

ସେଇ ସ୍ଥାନରେ ସୁରମା ଠିଆ ହୋଇ ଯାଇଁ ଦେଖିଲା— ରାଜ ନାହିଁ । ପକ୍କା ପାଚେରି ଆଉ ପାଖରେ ଫାଙ୍କା ଗୁହାଳଟିରେ ଗାଈ ଦୋ'ଟି ବାଛୁରୀଟିଏ ବନ୍ଧା ହୋଇଛନ୍ତି । କୁଟା, ଘାସର ଅଳିଆ । ପାଚେରିକୁ ଆଉଜି ସୁରମା ଠିଆ ହୋଇ, ଭାବିଲା— ବୋଧହୁଏ 'ସେ', କେଉଁଠି ତାକୁ ଦେଖିଥିବାରେ ଲୁଚିଛନ୍ତି, ଚଞ୍ଚଳ ତା' ପାଖକୁ ଆସିବେ । ସୁରମା ସେମିତି ଠିଆ ହୋଇଥାଏ । ପାଞ୍ଚ ମିନିଟ ଗଲା, କେହି ଆସିଲେ ନାହିଁ । ସୁରମାକୁ ଭାରି ଡର ମାଡ଼ୁ-ଥାଏ, ଆଉ ଦେହଟା ଥରୁଥାଏ । ପୁଣି ଭାବିଲା—ସେ କ'ଣ ଆଗରୁ ଅପେକ୍ଷା କରି କରି ଫେରିଗଲେ—ନା, ନିଦ ଲାଗିଯାଇଛି ଯେ ଶୋଇପଡ଼ିଛନ୍ତି । ଦେଖେ ତ କ'ଣ ଜମିଛି ଭାବି ଗଲା, କିନ୍ତୁ ରାଜର ଦେଖା ନାହିଁ ।

ଅନେକ ସମୟ ସୁରମା ଅପେକ୍ଷା କରି ଭାବିଲା—ଇମିତି ଠିଆ ହୋଇ ରହିଲେ, ବାଡ଼ିକୁ ଯଦି କିଏ ପୋଖରୀପାଣି ଆସେ, ତା' ହେଲେ ତାର ଅବସ୍ଥା ସରିଯିବ । ସେଇଠୁ ଖଣ୍ଡେ ପଥର ଉପରେ ଚଢ଼ି ପାଚେରି ଡେଇଁ ଅରପାଖକୁ ଗଲା । ଗୁହାଳର ଗୋଟିଏ କ'ଣକୁ ଚୁପ ହୋଇ ବସି ରାଜପଥକୁ ଅନାଇଁ ଥାଏ, ଆଉ ଭାବୁଥାଏ—ସେ କ'ଣ ତାହାହେଲେ ତାକୁ ଏତେ ହଟହଟା କରିବାପାଇଁ ପ୍ରତାରଣା କଲେ ?

ଯବମୁହୂର୍ତ୍ତରେ ଭାବିବ—ନା, ସେ ସେମିତିକା ଲୋକ ନୁହନ୍ତି । କଦାପି ସେ ତା ସଙ୍ଗରେ ଏପରି ବ୍ୟବହାର କରିବେ ନାହିଁ । ଠିକ୍ ଏ ବେଳେଁ ଟି ଖସ୍ ଖସ୍ ହେଲେ ସୁରମା ଛନ ଛନ ହୋଇ ଘରିଆଡ଼କୁ ଚାହେଁ କିନ୍ତୁ ଘଣ୍ଟା ପରେ ଘଣ୍ଟା ବି ଗଲା । ହରିଆଜି ଫେରି ଆସିଲା ନାହିଁ ।

ଥାନା ଘଣ୍ଟାରେ ଠଣ୍ ଠଣ୍ ହୋଇ ଗୁରିଟା ବାଜିବାର ସୁରମା ଶୁଣିଲା । ଭାବିଲା ନା, ଆଜି ଅପେକ୍ଷା କରି ହେବ ନାହିଁ । ଦେହଟା ଭାରି ଗରମ ଲାଗୁଥାଏ । ଅନ୍ତର ଭିତରୁ କୋଉଠାଏ କେମିତି କୋହ ଉଠୁଥାଏ । ଲୁଗା କାନିରେ ଲୁହ ବି ପୋଛୁଥାଏ ।

ସଡ଼କ ଆଡ଼େ ଶୁଣାଗଲା—ରାମ ନାମ ସତ୍ୟ ହେ, ରାମ ନାମ ସତ୍ୟ ହେ । କୁକୁରଗୁଡ଼ାକ ଭୁକି ଉଠିଲେ । କେଉଁଠୁ କୋଉଠାଏ ପେଚା ଉଡ଼ିଆସି ସେହି ଘରର ଚାଳରେ ବସି ଦ'ଥର ରାବିଦେଲା । ସୁରମା ଭୟରେ ଏକାବେଳକେ କାଠ ପାଲଟି ଗଲା । ଛାତିଟା ଜୋରରେ ଉଠୁଥାଏ ପଡୁଥାଏ । ତାକୁ ଲାଗୁଥାଏ ସେହି ଅନ୍ଧାର ଭିତରେ କେଉଁଠି ଡାଆଣୀଟା କି ଚିରୁଗୁଣୀଟାଏ ବଡ଼ଟାଳ ମୁହଁ କରି ତାକୁ ଖାଇ ଯିବାକୁ ଛପିବସିଛି । ସୁବିଧା ପାଇଲେ ମାଡ଼ ବସିବ । ସୁରମା ମନେ ମନେ ଠାକୁରଙ୍କୁ ଡାକିଲା ।

ତା'ପରେ ଆଉ ଦଣ୍ଡେ ଅପେକ୍ଷା ନ କରି ହେଉଁଅଲେଇ ଗଲା, ନିଜ ଖଞ୍ଜାକୁ । ଶୋଇଲା ଘରେ ପଶି ଯାଇଁ କବାଟ ଅସ୍ତେ ବନ୍ଦ କରି ଦେଇ ଚଉକି ଉପରେ ବସି ପଡିଲା । ଡ଼ରରେ ଦେହଟା ଥରୁଥାଏ । ହାଲ ଗୋଟାଏ ଗମ୍ ଗମ୍ ହୋଇ ବୋହି-ଗଲା । ଉଜୁଳିଆରେ ହାଲ ପୋଛି ହୋଇ ଠିଆ ହେଲା । ତାର

ଆଖି ପଡ଼ିଲା ଅଇନା ଉପରେ, ନିଜର ପୋଷାକ ପତ୍ର, ନିଜର ମୁହଁଟା ନିଜକୁଇ ଭାରି ଖରାପ ଲାଗିଲା । ଶାଢ଼ୀ ଖଣ୍ଡିକ ଟ୍ରଙ୍କରେ ରଖିଦେଇ ବିଛଣାରେ ବସିଲା । ଭାରି କାନ୍ଦ ମାଡ଼ୁଥାଏ, ଆଜି ମନଟା ବି ଛଟ ପଟ ହେଉଥାଏ । ରାତିରେ ମୁଣ୍ଡବାଳ ଗୁଡ଼ାକୁ ଅଡୁଆ ମଡୁଆ କରି ତକିଆଟା ମୁଣ୍ଡତଳେ ଦେଇ ମୁହଁମାଡ଼ି ଶୋଇ ପଡ଼ିଲା । ତା ପରେ ଲୁହ ନୁହେଁ, ଅନ୍ତରର କେତେ ଦିନର ବେଦନା ଭରା ଶପୁତା ବକ୍ତ୍ରରେ ତକିଆ ଓଦା ହେଲା ।

ରାଜ ଚମକି ପଡ଼ି ଉଠି ବସିଲା, ଲଣ୍ଠନଟା ତେଜି ହାତ ଘଡ଼ିଟାକୁ ଅନାଇଁ ଦେଲା, ସାଢ଼େ ଚାରି । କାହିଁ ଦୁଇଟା, କାହିଁ ସାଢ଼େ ଚାରି ! ପାଗଳଙ୍କ ପରି ଦୌଡ଼ିଗଲା ବାରିକୁ, କିନ୍ତୁ ଡାଲି ସୁରମାକୁ ଯେଉଁଠିକୁ କହିଥିଲା, ସେଇଠି ଦଣ୍ଡେ ଯାଇ ଠିଆ ହେଲା । ଅତର ବାସନାରେ ନାକ ଫାଟି ପଡ଼ୁଛି କିନ୍ତୁ ସୁରମା ନାହିଁ । ରାଜ ଆଉ ଠିଆହୋଇ ପାରିଲା ନାହିଁ । ଟ୍ରେଟ ପାଟେରକ୍ସ ଆଉଜି ପଡ଼ିଲା । ମନ ଭିତରେ ଭୀଷଣ ଝଡ଼ ତୋଫାନ । ଛାତିଟା ଦୁଲ୍ ଦୁଲ୍ ପଡ଼ୁଛି । ସୁରମା ତାର ଏତେ ନିକଟରେ—କେତେ ମନ ସ୍ୱର୍ଗରେ ଆସି ଫେରି ଯାଇଛି ! ସେ ଭାବିଥିବ କ'ଣ । ରୁମାଲରେ ଆଖି ଦୁଇଟି ପୋଛି—ଅନନ୍ୟ ମନସ୍କ ଭାବେ ଉପରକୁ ଅନାଇ ରହିଲା । ସେତେବେଳକୁ—

—ଯାହାନ୍ତ୍ର ତାରା ଉଇଁଲାଣି । ପୂର୍ବ ପଟ ଆକାଶରେ କିଏ କଳାରଙ୍ଗ ଉପରେ ଧଳା ରଙ୍ଗିଆ ତୁଳି ବୁଲାଉଥାଏ । ଗଛ ପତ୍ରର ଫାଙ୍କରୁ ଅନ୍ଧାର ନ ଛାଡ଼ୁଣୁ ନିଦ ବାଉଳା ଚଢ଼େଇଗୁଡ଼ା ଉଠିବା ପାଇଁ ଡକା ଡକି ହେଉଥାଅନ୍ତି । ରାଜ ଆଉ ସେଠି

ଆଉକି କହି ପାରିଲା ନାହିଁ । ପୁଣି ରୁମାଲରେ ଆଖି ଦୁଇଟି ପୋଛି ଫୁଲ୍ ଫୁଲ୍ ଫେରିଲା ନିଜ ଶୋଇବା ଘରକୁ । ପଞ୍ଜାବୀଟା ଟେବୁଲ ଉପରେ ପକାଇ ଦେଇ ଖଟ ଉପରେ ଶୋଇଲା । ଭାବୁଥାଏ—ଆଶା କେତେବେଳେ ଆସିବ, ଆଜି ତା' ହାତରେ ସେ କ୍ଷମା ମାଗି ସୁରମା ପାଖକୁ ଚିଠି ଦେବ ।

ସକାଳୁ ଆଶା ଆସି ଡାକିଲା—ସାନୁଭାଇ, କେତେ ଦିନ ଆସି ହେଲାଣି, ଉଠିବ ନାହିଁକି ? ରାଜ ଉଠି ବସିଲା, ଆଶା ହାତକୁ ଧରି ପକାଇ ପଚାରିଲା—ଅପା କ'ଣ କରୁଛି ? ଆଶା କହିଲା, ଅପା ଚିଠି ଲେଖି ଦେଇ ବହି ପଢ଼ୁଛି; କହିଲା—ତୁମେ ଚିଠି ଦିଅ । ଆଶା ତା ହାତକୁ ଚିଠିଟି ବଢ଼ାଇ ଫୁଲ ତୋଳିବାକୁ ଗଲା । ରାଜ ଚିଠିଖଣ୍ଡ ତର ତର ହୋଇ ଖୋଲି ପଢ଼ିଲା । ତା' ପରେ ଖଣ୍ଡେ କାଗଜରେ ଲେଖିଲା ।

ଆଦରର ସୁରମା,

ମୋର କାଲି ଯେଉଁ ଦୋଷ ହୋଇଛି; ସେଥିପାଇଁ କ୍ଷମା ଦେବ । କାଲି ଜାଗର ଉପବାସ ଥିଲା । ବାରଟା ପର୍ଯ୍ୟନ୍ତ ବସି ବସି ଦେହ ଟିକିଏ କ୍ଳାନ୍ତ ଲାଗିବାରୁ ଯାଇଁ ଖଟ ଉପରେ ଟେଇଁ ଶୋଇଲି । ଘଣ୍ଟାକୁ ଅନାଇ ଥାଏ, ସାଢ଼େ ଗୋଟାଏ ବାଜିଲେ ଉଠିଯିବି ବୋଲି, କେତେବେଳେ ନିଦ ଆସିଗଲା ଜାଣିନାହିଁ ! ଯେତେବେଳେ ନିଦ ଭାଙ୍ଗିଲା—ଉଠିଦେଖେ ସାଢ଼େ ଚାରିଟା । ପାଗଳଙ୍କ ପରି ଉଠି ବାରକୁ ଦଉଡ଼ିଲି । ତୁମେ ସେତେବେଳକୁ ଚାଲି ଯାଇଥିଲ । ତୁମର ଦେହର ବାସନା ବାରି ଭାବିଲି—ତୁମେ ଅନେକ ସମୟ ସେଠାରେ ଅପେକ୍ଷା କରି ଫେରିଛ । ସେଥିପାଇଁ ମୋ ମନରେ ଯାହା କଷ୍ଟ ହେଲା ତାହା ମୁଁ ଜାଣେ ।

ଆଜି, ଠିକ ଗୋଟାଏ ବେଳେ ଯାଏ ଅପେକ୍ଷା କରିଥିବ, ତୁମେ ଆସିବାକୁ ଭୁଲିବ ନାହିଁ । ଏତେ କଷ୍ଟ ଦେଲି ବୋଲି, କ୍ଷମା କରିବ ।

ତୁମର
ସ୍ନେହର
ରାଜ

ରାଜ ଚିଠିଖଣ୍ଡିକ ଆଶା ହାତରେ ଦେଇ କହିଲା—ଏ ଚିଠି ନେ, ଅପାକୁ ଦେବୁ, ଆଉ କହିବୁ ସାଙ୍ଗେ ସାଙ୍ଗେ ଚିଠି ଦେବାକୁ । ତୁ ସ୍କୁଲକୁ ଯିବା ଆଗରୁ ମୋତେ ଚିଠି ଆଣି ଦେଇ ଯିବୁ, ନଚେତ୍ ଜାଣିଥା ।

ଆଶା ଆଖି ଖୋସି ଦେଇ କହିଲା—ଇଚେ ବାବାରେ ! ଏ କ ଚିଠିକି ? ଅଚ୍ଛା ଏ ଚିଠିଖଣ୍ଡ ମୁଁ ନେଇ ସ୍କୁଲକୁ ଚାଲିଯିବି, ସ୍କୁଲରୁ ଫେରିଲା ବେଳେ ଯାଇଁ ଅପାକୁ ଦେବି । ମୁଁ କ'ଣ ତୁମ ଚାକରାଣୀ ? ଏତେ ଚଞ୍ଚଳ ଆଣିଦେବି ?

ରାଜ ତା' ଗାଲକୁ ଚିପିଦେଇ ହସି ୨ କହିଲା—ଚାକରାଣୀ ନାହିଁ, ଆଉ କ'ଣ ? ଆଶା କହିଲା—ସେତେ ନା, ମୁଁ ତୁମ ଚାକରାଣୀ ! ଦେଖିବ ରହିଥା, ଏ ଚିଠି ଯମାରୁ ଦେବି ନାହିଁ । ଖାଲି ଫୋପାଡ଼ି ଦେବି । କହି କହି ଆଶା ଚାଲିଗଲା । ରାଜ ଚାକରକୁ ଡାକି କହିଲା—ଦାନ୍ତକାଠି ଖଣ୍ଡେ, ପାଣି ଟିକେ ଦେଇ ଯା ।

ରାଜ ଜଳଖିଆ ଖାଇସାରି, ଖଟ ଉପରେ ଏଣୁ ତେଣୁ ବହି ଗୁଡ଼ାଏ ଓଲଟାଉ ଥାଏ । ଭାବୁଥାଏ—ବୋଧହୁଏ ସୁରମା ରାଗି ତା' ପାଖକୁ ଚିଠି ଦେଉନାହିଁ । ଥାନା ଘଣ୍ଟାରେ ଠଣ ଠଣ ହୋଇ

ନ'ଟା ବାଜିଲା । ରାଜା 'ଆଶା' ପଥକୁ ଚାହିଁଥାଏ । ଠିକ୍ ସମୟ ପରେ ଆଶା ବସ୍ତାନଟା ବାଁ ହାତରେ ଧରି, ଦଉଡ଼ି ଦଉଡ଼ି ଆସି ଚିଠି ଖଣ୍ଡେ ପକେଇ ଦେଇ କହିଲା —ନିଅ ଚିଠି । ମୁଁ ଯାଉଛି । ଗାଡ଼ି ଏଇକ୍ଷଣି ଆସିବ । ଆଶା ଚାଲିଗଲା ।

ରାଜା ତର ତର କରି ଚିଠିଟି ଖୋଲି ପଢ଼ାଇଲା । ଲେଖାଅଛି—

ଆପଣଙ୍କର ଚିଠିଖଣ୍ଡି ପଢ଼ି ସବୁ କଥା ଜାଣିଲି । ସକାଳେ ଚିଠି ଲେଖିବାକୁ ସୁବିଧା ନ ଥିଲା । ବର୍ତ୍ତମାନ ବି ସ୍କୁଲ ବେଳ ହୋଇ ଗଲାଣି । କାଲି ରାତିରେ ମୁଁ ଯା ଅବସ୍ଥା ହୋଇଛି ତାହା ଦେଖା ହେଲେ କହିବି । ରାତି ଗୋଟାକ ପରେ ଯାଇ ଫିରି । ନମସ୍କାର ।

ସୁରମା

ରାଜା ଚିଠି ଖଣ୍ଡିକ ପଢ଼ି ସାରି ଆନନ୍ଦରେ ଘଉରେ ; ଗୁଣି ଧରିଲା । ଭାବୁଥାଏ ସୁରମାଟି ତାର କେତେ ସରଳ; କେତେ ଶାନ୍ତ । ରାଗ ସୁଦ୍ଧା ତା'ର ଟିକିଏ ନାହିଁ । ଜୀବନରେ ସେ ଯଦି ତାକୁ ପାଇପାରନ୍ତା, ତାହାହେଲେ—

ସେହି ଦିନ ରାତି ବାରଟା । ରାଜା ଲୁଗା, ପଞ୍ଜାବୀ ପିନ୍ଧି ଚେୟାର ଉପରେ ବସି ଘଡ଼ିଟାକୁ ଚାହିଁଛି, କେତେବେଳେ ଗୋଟାଏ ବାଜିବ, ଆଉ ସେ ଉଠିଯିବ । ରାଜାର ଚଞ୍ଚଳ ମନର ଗତି ସଙ୍ଗେ ସଙ୍ଗେ ମିନିଟ କଣ୍ଟାଟା ଠିକ୍ ଠିକ୍ ହୋଇ ଗୋଟାଏ ଉପରକୁ ଆସିଲା । ରାଜା ଉଠି ଠିଆ ହେଲା, ମୁଣ୍ଡଟାକୁ ଆଉ ଥରେ କୁଣ୍ଡାଇ, ହାତରେ ଖଣ୍ଡେ ସତରଞ୍ଚି ଧରି ଚାଲିଲା ବାହାରକୁ ।

... ପାରେସମୂଳେ ସତରଞ୍ଜିଟି ପାରି, ପାରେସକୁ ଅଡ଼କ ଚିଅ ହେଲ, ସୁରମା କେତେବେଳେ ଅସିବ ! ଦେହଟା ଥରୁଥାଏ, ନିଃଶ୍ୱାସ ଜୋରରେ ଚାଲୁଥାଏ । ଅନ୍ଧାର ଭିତରେ ଥରକୁ ଥର ନରେଖି ରହୁଥାଏ, ସୁରମା ଅସୁଚକି ! କିନ୍ତୁ ସୁରମାକୁ ଦେଖେ ନାହିଁ । ଅନ୍ୟ ରକମ ଭାବେ—ଜଣେ କାଲିପରି ସୁରମା ଭାବେ ଯେ ମୁଁ କାଳେ ଶୋଇଯାଇଥିବି ସେଥିପାଇଁ ସେ ଜଣେ ଆଜି ନ ଅସିବ !

ଇମିତି କେତେ କ'ଣ ଭାବୁ ଭାବୁ ସେହି ଅନ୍ଧାର ଭିତରେ ସୁରମା ଅସୁଥିବାର ରାଜ ଦେଖି ପାରିଲ । ତା ଦେହଟା ଅଜିର ଥରି ଉଠିଲା । କ'ଣ ତାକୁ ସେ ଅଗ କହିବ ! କ'ଣ କହି କଥା ଅରମ୍ଭ କରିବ ! ରାଜ ସୁରମା ଅଡ଼କୁ ଅନାଇଛି, ସୁରମା ପାଖରେ ପହଞ୍ଚି ଯାଇ, ରାଜକୁ ଦେଖି ଥମିଗଲା । ତା' ପରେ ପରେ ନରମ ଗଳାରେ କହିଲା—ନମସ୍କାର । ରାଜ ଥରି ଥରି କହିଲା—ନମସ୍କାର । ରାଜ ତା' ପରେ ଅରମ୍ଭ କଲା—ମୋ ପାଇଁ ଅନେକ କଷ୍ଟ କାଳି ପାଇଲ ନୁହେଁ ? ସୁରମା ଲଜ୍ଜା ଲଜ ହୋଇ କହିଲା—କଷ୍ଟ କ'ଣ, ମୋତେ ଭାରି ଡର ମାଡ଼େ ବୋଲି...ରାତି ପାହି-ବାକୁ ଅଳ୍ପ ସମୟ ଥିଲା ସେଥିପାଇଁ । ରାଜ କଥା କହୁ କହୁ ସୁରମାର ଡାହାଣ ହାତ ପାପୁଲିଟିକୁ ତା ହାତ ମୁଠାରେ ରଖି, ଅଳ୍ପେ ଚାପି ଦେଇ କହିଲା—ସୁରମା, କେତେବେଳଯାଏ ଆଉ ଠିଆ ହୋଇ ରହିବ । ଏ ପାଖକୁ ଅସିଲେ କ'ଣ ଦୋଷ ଅଛି ?

ସୁରମାର ହାତକୁ ରାଜ ଧରିଲା କେବଳ, ତା ଦେହଟା ରୋମାଞ୍ଚିତ ହେଉଥାଏ । କେତେବେଳୁ ମୁଣ୍ଡଟା ଢଳି ଗଲାଣି

ଯେମିତି ସେ ସେଇଠି ଚମ୍ଭୁଡ଼ି ହୋଇ ପଡ଼ିବ । ରାଜ କଥାର ଉତ୍ତର ଦେବାକୁ, ଥର ଥର ଗଳାରେ କହିଲା—ମୁଁ ତ ଏଠି ଠିଆ ହୋଇଛି ଗୋଡ଼ କିଛି ହଉ ନାହିଁ । ଆଗରୁ ଯେତେ କଥା ନିର୍ଭୟରେ କହିବାକୁ ଭାବି ଥିଲା—ଆଉ କହି ପାରିଲା ନାହିଁ । ରାଜ ତାକୁ ଚୁଇଁ ଦେଲାବେଳକୁ ତା' ଜର ଅଟକି ଯାଉଛି ।

ରାଜ ଆଦରକରି କହିଲା—ମୋ ରାଣୀ, ଏ ପାଖକୁ ଆସ, ଗୋଡ଼ କ'ଣ ହୋଇଯିବ, ଯେତେବେଳଯାଏ ଆଉ ଇମିତ ଠିଆ ହେବ । ଏହା କହି ଅସ୍ତେ ତା' ହାତକୁ ଟାଣିଲା । ସୁରମା ଯନ୍ତ୍ର ଚାଳିଲା ପରି, ପଥର ଉପରେ ଗୋଡ଼ ବଢ଼ାଇ ଦେଇ ଏ ପାଖକୁ ଆସିଲା । ରାଜ ସତରଞ୍ଜିରେ ବସିପଡ଼ ସୁରମାର ହାତକୁ ଟାଣି କହିଲା—ବସ । ସୁରମା ବସିଲା । ରାଜ ଏକାବେଳକେ ତା' ପାଖକୁ ଲାଗି ଯାଇଁ ହସି ହସି କହିଲା—ମୋ ପାଖରେ ଇମିତ ଦୂର ହୋଇ ବସିଛ ନା, ସେ ଦିନ ମୋତେ ବାଡ଼ିଲା ଖଡ଼ାରେ ମାରୁଥିଲା କିଏ ? ସୁରମା ତଳକୁ ମୁହଁ ପୋତିଲା । ତା ପରେ ରାଜ କ'ଣ କଲା ନା, ମୁହଁ ପାଖରେ ମୁହଁ ଲଗାଇ ସୁରମାର ହଣ୍ଟିକୁ ଦେଖୁ ଦେଖୁ ଗୁଡ଼ାଏ ଅଡ଼କୁ ଆଉଜେଇ ଆଣିଲା । ସୁରମା ଗାଠିପଣ ଥରୁଥାଏ । ରାଜ ବି ।

ରାଜ ସୁରମାର ମୁଣ୍ଡର ବାଳ ଗୁଛକୁ ଆଉଁସୁ ଥାଏ, ଓ ସୁରମା, ତାର ବକ୍ଷ ଭିତରେ ଥାଇଁ ଥରୁଥାଏ । କାହାରି ଓଠରେ କଥା ନାହିଁ ।

ଅନ୍ଧାର ରାତି । ଗୁହଅଟେ ଖାଁ ଖାଁ । ଦରଣ୍ଡ ପଡ଼ଝଡ଼ରେ ଝାଉଁ ଗୁଡ଼ା ପହର ଦେଲାପରି ଶବ୍ଦ ଛାଡ଼ୁଥାଆନ୍ତି । ଲତେ

ଜୁକୁଜୁକିଆ ପୋକ ଏ ଦୁଇ ଜଣଙ୍କୁ ଦେଖି କେଉଁଠି ଖବର ଦେବାକୁ କାଁ କାଁ ମିଟି ମିଟି ଆଲୁଅ ଜାଳି ତାଙ୍କ ମୁଣ୍ଡ ଉପର ଦେଇ ଉଡ଼ି ଯାଉଥାଆନ୍ତି ।

କେତେବେଳ ପରେ ରାଜା ଥରି ଥରି ବଡ଼ ଦରଦ ସ୍ୱରରେ ଡାକିଲେ—ସୁରମା ! ସୁରମା ଆଉ ଜବାବ ଦେଲା ନାହିଁ । ରାଜା ଥରି ଥରି ହାତରେ ତାର ମୁହଁଟିକୁ ଉଠାଇଲେ । ଅନ୍ଧାର ଭିତରେ କେତେବେଳକୁ ସୁରମାର ସଜଳ ଆଖି ଦୁଇଟି ବୁଜି ହୋଇ ଯାଇଥିଲା, ଓଷ୍ଠ ଫିକା ନାଲି ଚିବୁକ ଦୁଇଟି ଥରି ଥରି ହୋଇ ଥରି ଉଠିଥିଲା । ତା' ପରେ—ଅନ୍ଧାର ତାର ସାକ୍ଷୀ ।

ଯୌବନ ଆମ୍ଭହାଁ ଦେଉଳର ପରଦା ଏତେ ଦିନକେ ଅପ ସରି ଗଲା । ତାର ଭିତରେ ଲାଜ ସରମ, ସଙ୍କୋଚ ତୁଅଟେ ଉଭେଇ ଗଲା । ରାଜା ବୁଝିଲେ, ସୁରମା ବୁଝିଲା, ଦୁନିଆରେ ଆନନ୍ଦ କରିବାର କେତେ ଜିନିଷ ଅଛି; କିନ୍ତୁ ଆମର ସମାଜଟା ସେହି ଆନନ୍ଦର ବେକରେ ଫାଶି ଦେଇ ମାରୁଛି । ଯଦି ଏହି ନିଷ୍ଠୁର ସମାଜଟା ନଥାନ୍ତା ତାହାହେଲେ······

ରାଜା ସୁରମାର ପିଠିରେ ହାତ ବୁଲାଇ ବୁଲାଇ କହିଲେ—ସୁରମା, ଏ ଅନ୍ଧାରାଟରେ ଆଉ କାହିଁକି ବସିବା । ମଶା ବି ଭଣ ଖାଉଛନ୍ତି । ମୋ ଘରକୁ ଯିବା ଚାଲ । ସେଠି ତ କେହି ନାହାନ୍ତି ଚାକରଟୋକାଟା ଦାଣ୍ଡ ଘରେ ଯାଇଁ ଶୋଇଛି ।

ସୁରମା ବଡ଼ ଟେଟେଇ ହୋଇ କହିଲା—ନା, ଆଜି ଯି ନାଇ । ଭାରି ପଢ଼ା ପଡ଼ି ଅଛି । ଘରେ ତ ଠିକ୍ ଏ ନ ଶୋଇବ ସ୍କୁଲକୁ ଆଉ ଯାଇ ପାରିବି ନାହିଁ--କାଲି ପଢ଼ିବା । ରାଜା ଆଉ ବା କଲେ ନାହିଁ । ତା' ପରେ ଚାଲିଲେ ଦୁହେଁ କର ହସ୍ତ, ଚୁଡ଼ି, ଅଙ୍ଗୁଣ୍ଠି ଚପ

ଥାନା ଘଣ୍ଟାରେ ଘଣ୍ଟା ବାଜିଲା । ସୁରମା ଚମକିଲା ପରି ଉଠି ଠିଆ ହେଲା ! ରାଜ ବୁଝିଲା । ସୁରମା କହିଲା, ଯାଉଛି ଆଉ ଅଳ୍ପ ସମୟରେ ରାତ ପାହିଯିବ । ରାଜ ତା' ହାତଟିକୁ ଚିପି ଧରି କହିଲା—ଅନ୍ତ୍ରେ ଯାଅ । ସୁରମା ଚାଲିଗଲା । ରାଜ ସଉ-ରଞ୍ଜିଟା ଉଠାଇ ଘରକୁ ଫେରିଲା ।

× × × ×

ଦିନ ପରେ ଦିନ ଚଳି ଚାଲିଲା—ଦୁଇଟି ନବଜୀବନର କେତେବେଳେ ମଧୁର ଗଳ୍ପ, କେତେବେଳେ ଭୀଷଣ ପ୍ରତିଜ୍ଞା, କେତେବେଳେ ହସ ଖୁସି ମଧ୍ୟ ଦେଇ ।

## ଗୋଟାଏ ମାସ ପରେ—

ସନ୍ଧ୍ୟା ବାରଟା । ସୁରମା ପାଇଁ, ରାଜ ହୋଟେଲରୁ ପୁରୀ, ମାଂସ ଇତ୍ୟାଦି ଆଣି ରଖିଥାଏ । ଘରଟିକୁ ସଜା ସଜ କରି, ଖଟ ଉପରେ ଭଲ ବିଛଣା ସୁନ୍ଦର ଚାର ଚେୟାର ଉପରେ ସୁରମା ଅସିବା ପଥକୁ ଅନାଇ ଥାଏ । ଗୋଟାଏ ବାଜିଲା, ତଥାପି ସୁରମା ଅସିଲା ନାହିଁ । ରାଜର ମନଟା କୁଆଡେ ଲାଗୁ ନ ଥାଏ । ଲଣ୍ଠନ ଟିକିଏ ତେଜ କରିଦେଇ ବଙ୍ଗଳା, ଓଡିଆ ଓ ଇଂରାଜୀ ମାସିକ ପତ୍ରିକା ଏପାଖ ସେପାଖ ଓଲଟାଇବାରେ ଲାଗିଥାଏ ଅଉ ଥରକୁ ଥର ଦୁଆର ମୁହଁକୁ ଚାହୁଁ ଥାଏ ।

ଠିକ୍ ସାଢ଼େ ଗୋଟାକ ବେଳେ ସୁରମା ଦେବୀପ୍ରତିମା ପରି ନୀଳ ଶାଢ଼ୀ ଖଣ୍ଡିଏ ପିନ୍ଧି ଦୁଆର ମୁହଁରେ ଅସି ଠିଆ ହୋଇଗଲା । ରାଜ ଚକ୍ର ଦେଖିଲା ଅବ ଦରେ ସେହି ଅଡକୁ ଚାହିଁ ରହିଲା । ସୁରମା ଅଧର କୋଣରେ ଯୌବନର ଦୁଷ୍ଟାମି ହସ ହସି କହିଲା--

ଅପଣ ଏତେବେଳ ଯାଏ ଜଗିଛନ୍ତି ନା ! ରାଜା ଅଚ୍ଛା କରି କହିଲେ—ତୁମେ ଏତେବେଳେ ଯାଏ ଜାଗି ଥିଲ ଯୋ ଦୁହେଁ ଯାକ କୁରୁ କୁରୁ ହୋଇ ହସି ଉଠିଲେ ।

ସୁରମା ଯାଇଁ ଖଟ ଉପରେ ବସିଲା । ରାଜା ସୁରମାର ଓଠରେ ମଝି ଅଙ୍ଗୁଠିଟି ମାରି ଦେଇ ହସି ହସି କହିଲେ—ତୁମ ପାଇଁ ମଣିଷ ଉପାସରେ ମଲାଣି । ଶୋଭୁଟା ଲଗାଇଲେ ତରକାରୀଟା ଗରମ ହେବ ।

ସୁରମା ଟିକିଏ ବିସ୍ମିତ ହେଲା ପରି କହିଲା—ଏତେବେଳ ଯାଏ ଖାଇ ନାହାନ୍ତି ? ରାଜା ଉଆଁଳିଟା ମାରୁ ମାରୁ ବଡ ଦରଦ ସ୍ୱରରେ କହିଲେ—ତୁମେ ଅସି ନ ଥିଲ ଯେ—

ରାଜାର ଦରଦ ସ୍ୱରରେ, ସୁରମା ମନରେ ଟିକିଏ କାହିଁକି ଖଟ୍ କରି ଦେଲା । ସେଇଠୁ ରାଜା ହାତରୁ ଉଆଁଳିଟା ଛଡାଇ ନେଇ କହିଲା—ମୋ ରାଣ, ଅପଣ ଖଟ ଉପରେ ବସନ୍ତୁ ମୁଁ ସବୁ କରି ନେଉଛି । ରାଜା କହିଲେ—ମୋର ଅଜି ବଡ ଭାଗ୍ୟ, ତୁମ ହାତରୁ ମୁଁ ଅଜି ଖାଇବି ! ସୁରମା ହସିଲା !

ତରକାରୀ ଗରମ କରି ସୁରମା କହିଲା—ଅପଣ ଖାଇ ଦିଅନ୍ତୁ । ରାଜା କହିଲେ—ସତେ, ମୋ'ର ପାଇଁ ଏତେବେଳ ଯାଏ—ମୁଁ ଖାଇ ନାହିଁ ନା ! ଦୁଇଟା ଥାଳରେ ଅଣ । ତୁମେ ଯଦି ନ ଖାଇବ, ମୁଁ ଜମାରୁ ଖାଇବି ନାହିଁ । ସୁରମା ଦୁଇଟା ଥାଳରେ ମାଂସ ତରକାରୀ ଓ ଗୋଟାଏ ଥାଳରେ ପରୀ ଅଣି ଟେବୁଲ ଉପରେ ଥୋଇଲା । ରାଜା କହିଲେ—ଖାଅ । ସୁରମା କହିଲା—ଅପଣ ଅଗେ ଖାଆନ୍ତୁ ।

ଦୁହେଁଯାକ ହସା ହସି ହୋଇ ଖାଉଥାଆନ୍ତି । ରାତି ଦୁଇଟା । ରାଜ ପୁଅ ଖଣ୍ଡେ ମାଂସ ଝୋଲରେ ବୁଡ଼ାଉ, ବୁଡ଼ାଉ କହିଲା—ସୁରମା, ମୁଁ କାଲି ରାତିରେ ଗୋଟାଏ ଭଲ ସପନ ଦେଖିଛି, ଶୁଣିବ । ସୁରମା ହସି ହସି କହିଲା—କି ସ୍ୱପ୍ନ ? ରାଜ ମାଂସ ଖଣ୍ଡେ ଗୋବାଇ, ମୁଖ ଭଙ୍ଗି କରି କହିଲା—ସ୍ୱପ୍ନଟାତ ସେମିତି କହି ଦେଲେ ହେବନାହିଁ । ତାକୁ ଗୋଟାଏ ଗପ ଆକାରରେ କହି-ବାକୁ ପଡ଼ିବ । ସୁରମା ହସି ହସି ବେଦମ ହୋଇ କହିଲା—କହରେ ବାବା, କି ସ୍ୱପ୍ନ-ଇମିତି ! କହ ତ ନା !

ରାଜ କହିଲା—ଆଚ୍ଛା ଶୁଣ । କିମିତି ଗୋଟାଏ ମସ୍ତ ବଡ଼ ଦୁଆର ହୋଇଛି, ଘରଅଡ଼େ ଅଳୁଅ ଲାଗିଛି, ଫୁଲମାଳ ଝୁଲୁଛି । ଲୋକବାକ ଘରଅଡ଼େ ରୁଣ୍ଡ ହୋଇଛନ୍ତି । ଦାଣ୍ଡରେ ବାଜା ବାଜୁଛି । ଅଗଣାରମଝିରେ କ'ଣ ହୋଇଛି ନା—ଗୋଟାଏ ବେଦ ବନ୍ଧା ହୋଇଛି । ପୁରୋହିତ ବାବୁଏ ସବୁ ବସିଛନ୍ତି । ତା'ର ମଝିରେ ମୁଁ ଦିବ୍ୟରୂପ ଧରି ମୋଡ଼ଟ ପିନ୍ଧି ବସିଛି । ସୁରମା ବାଧା ଦେଇ କହିଲା—ଥାଉ ଥାଉ, ତୁମ ସପନ କଥା ସେତିକି ଥାଉ । ରାଜ କହିଲା—ଅରେ ଶୁଣ—ହଁ, କେତେବେଳ ପରେ ଗୋଟାଏ ଘରୁ ବାରିକଅଣୀଟାଏ ତୁମକୁ ନୂଆଁଇ ନୂଆଁଇ ବେଦ ଉପରକୁ ଆଣୁଛି । ତୁମେ ବି ମୋଡ଼ଟ ପିନ୍ଧିଛ—ସୁ ସୁ ହୋଇ କାନ୍ଦୁଥାଅ । ସୁରମାର ଲାଜରେ ମୁହଁ ରଙ୍ଗା ପଡ଼ିଗଲା, ଉଠି ପଡ଼ି କହିଲା—ସେମିତି କହିଲେ ପଳେଇବି । ବାଁ ହାତରେ ରାଜ ତାକୁ ବସାଇ ଦେଇ କହିଲା—ଶୁଣ, ଅସଲ କଥାତ ରହିଛି । ତା'ପରେ ପୁରୋ-ହିତ କେମିତି ମନ୍ତ୍ର ପାଠ କରୁଛି, ଆଉ ତୁମ ହାତ ସଙ୍ଗେ ମୋର

ହାତ ବଣ୍ଟି ପଡୁଛି । ମୁଁ କଣ କରୁଛି ନା, ତୁମ ହାତକୁ ଠିକ୍‌ଏ ଚିମୁଟି ଦେଉଛି, ରାଜ ଉଚ୍ଚ ଉଚ୍ଚ ହସି ପକାଇଲା । ସୁରମା ମୁହଁରେ ଲଜ୍ଜା ଚାକିଲା । ପୁଣି ରାଜ ଆରମ୍ଭ କଲା--ବାହା ଘରଠ ସରିଲା ତା'ପରେ ତୁମେ କୁଆଡେ଼ ଗଲ—ମୁଁ କୁଆଡେ଼ ଗଲି ସେ ସବୁ କଥା ମୋର କିଛି ମନେ ନାହିଁ ।

ରାଜ ଉଠିଲେଉ କହିଲା—ସୁରମା, ହାତଟା ଆଗେ ଧୋଇ ନିଅ । ଏହାପରେଇ ଅସଲ କଥା ପଡ଼ିବ । ସୁରମା ହସି ହସି କହିଲା—ତୁମ ଅସଲ କଥା ତୁମ ଠେଇଁ ଥାଉ । ହାତ ଧୁଆ ସରିଲା । ରାଜ ସିଗାରେଟ୍ ଖଣ୍ଡେ ଲଗାଇ ବଙ୍କା ବଙ୍କା କରି ଧୂଆଁ ଛାଡ଼ୁ ଛାଡ଼ୁ ଆରମ୍ଭ କଲା—

ତା'ପରେ ଦେଖିଲି, ତୁମେ ମୁଁ କେମିତି ଉପର ମହଲାରେ ଚୌକିଏ ଦୋ'ମହଲା କୋଠା ଘରେ ରହୁଛେ । ଆମର ଧନ ସମ୍ପତ୍ତି ପୂରି ରହିଛି । ମଟର, ଘୋଡ଼ାଗାଡ଼ି କେତେ କ'ଣ । ପୁଣି ଦେଖିଲି କେମିତି ଶୀତ ଦିନ ହୋଇଛି । ସେଦିନ ହଲମ୍ଭରେ 'ହାଁଥୀ' ଖେଳି ଥାଏ । ତୁମେ ମୋ ପାଖରେ ଠିଆ ହୋଇ କହୁଛ, ମୁଁ ଅନେକଦିନରୁ ସିନେମା ଦେଖିନାହିଁ, ଆଜି ଚାଲ ଯିବା । ତା' ପରେ କେମିତି ତୁମର ବାଁ ହାତକୁ ଗ୍ଳୋଭ୍‌, କମିଜ୍ ଗଣ୍ଡିଏ ପିନ୍ଧି ୩।୪ ବର୍ଷର ଗୋରା ଢକ ଢକ ପୁଅଟିଏ ଗୋଡ଼ ମଲ ଦେଲା ଖନ ଖନ କରି ତୁମ କାନ ଧରି ଅଡ଼ୁଛି—ନା, ବୋଉ ତୁ ଚାଲିଲେ, ମତେ ବାଇସ୍କୋପ ଦେଖେଇ ନବୁ । ହଠାତ୍ ନିଦଟା ମୋର ଭାଙ୍ଗିଗଲା ! ଗୁରୁଅଙ୍କୁ ଅନାଇଲି ତୁମେ ନାହଁକ ; ସେ ପୁଅଟି ନାହିଁ । ଛାତିଟା ଦମ୍ ଦମ୍ ପଡ଼ୁଥାଏ । ସେତିକିବେଳେ ଠାକୁରଙ୍କୁ କେତେ

ଭାବିଲି—ସତେ ଠାକୁର ଏତେ ଢଙ୍ଗିଆ କହୁଚେ ! ସୁରମା ଏତେ ବେଳ ଯାଏ ଚୁପ ହୋଇ ଶୁଣୁଥିଲା । ରାଜ କଥା ବନ୍ଦ କଲାରୁ ସୁରମା ଗୋଟାଏ ଦୀର୍ଘ ନିଶ୍ୱାସ ମାରି ମୁରୁକି ହସି କହିଲା—କି ସୁନ୍ଦର ଗପ ଏଇଟା, ମନଗଢ଼ା ଗପ, ନା ସ୍ୱପ୍ନ ?

ରାଜ ସିଗାରେଟ୍ ଖଣ୍ଡେ ଲଗାଇ କହିଲା—ସ୍ୱପ୍ନରେ ଯାହା ଦେଖିଲି ନା, ମଣିଷ କ'ଣ ମନରୁ ବାନ୍ଧି ଇମିତି କହି ପାରିବ ? ସୁରମା ଥଟ୍ଟା କରି କହିଲା—ଇସ୍ ଭାରି କଥାଟାତ, ଆପଣଙ୍କ ସରି ଯଦି ମୋତେ ଇମିତି ମନଗଢ଼ା କଥା ଆସୁଥାଆନ୍ତା, ତାହାହେଲେ ଗୋଟାଏ କ'ଣ ଟକଟେଟା ଇମିତି କହି ଦିଅନ୍ତି ।

ରାଜ ସୁରମାର ଅତି ନିକଟକୁ ଘୁଞ୍ଚି ଆସି କହିଲା—ସୁରମା, କଥାଟାକୁ ହସରେ ଉଡ଼ାଇ ଦିଅନାହିଁ । ସ୍ୱପ୍ନଟା ଦେଖିଲା ବେଳୁ ମୋ ମନରେ କାହିଁକି ବଡ଼ ଆଘାତ ଲାଗିଛି । ମୁଁ ଆଜି ତୁମଠାରୁ ଗୋଟାଏ କଥା ଆଦାୟ ନ କରି ଘୁଞ୍ଚିବି ନାହିଁ । ଏ କଥା କହିଲା ବେଳେ ରାଜର ସ୍ୱରଟା କାହିଁକି ଥରି ଉଠିଲା, ସାରା ମୁହଁଟିରେ ଫୁଟି ଉଠିଲା ଗୋଟାଏ କରୁଣ ଚିହ୍ନ ।

ରାଜର ମୁହଁଟି ଏପରି ଦେଖିଲା ବେଳୁ, କଥାଭରା ସ୍ୱର ଶୁଣିଲା ବେଳୁ, ସୁରମାର ମନଟା ଭାରି ଗୋଳେଇ ଘାଣ୍ଟି ହେଲାଣି—ଚିନ୍ତା ପ୍ରତିମା ପରି ରାଜ ମୁହଁକୁ ଚାହିଁ ଥାଏ ।

ରାଜ କଥା କହୁ କହୁ ସୁରମାର ବାଁ ହାତଟିକୁ ନିଜ କୋଳରେ ରଖି ସାଉଁଳି ସାଉଁଳି କହି କହିଲା—ତୁମେ ମୋତେ କହ, ଏ ସ୍ୱପ୍ନଟା କ'ଣ ସତରେ ସତ ହେବ ? ତୁମେ ଏ ସ୍ୱପ୍ନଟା ସତରେ ପରିଣତ କରି ପାରିବ ! ରାଜର କଣ୍ଠ ସ୍ୱରଟା ଆଉରି ଥରି ଉଠିଲା ।

ସୁରମା ରାଜକୁ ହାତରୁ ଦେଇ କହିଲା—ମୋ ରାଣ, ମନ ଆଉ କଷ୍ଟ କରନାହିଁ । ମୁଁ କଟକ ଚଣ୍ଡୀଙ୍କୁ ଦିନ ରାତି ଡାକୁଛି, ତୁମେ ଡାକ, ଆମର ମନକଥା ସେ ବୁଝିବେ । ସେଦିନ ସବୁ ଏତେ କହିଥିଲି, ଆପଣ ସେହିକଥା ପୁଣି ପଚାରୁଛନ୍ତି ନା ! ଯଦି ମୋତେ ଏତେ ଭଲପାଅ, ମୋକଥା ବିଶ୍ୱାସ ଯାଅନାହିଁ କାହିଁକି ?

ରାଜ ବ୍ୟଥାଭରା ସ୍ୱରରେ କହିଲା—ସୁରମା, ତୁମେ ଭାବଚ ମୁଁ କ'ଣ ତୁମକୁ ଭଲପାଏ ନାହିଁ, ବିଶ୍ୱାସ ଯାଏନାହିଁ ? କିନ୍ତୁ ମନଟା କାହିଁକି ବୁଝେନ । ତୁମ ଉପରେ ତୁମେତ ମୁରବି ନୁହଁ, ବାପା, ମା, ଭାଇ ଭଉଣୀତ ପୁଣି ଅଛନ୍ତି ।

ସୁରମା କହିଲା—ତାହାହେଲେ ଆପଣ ମତେ ବିଶ୍ୱାସ କରନ୍ତୁ ନାହିଁ, ବାପା ମା, ଯିଏ ଥାଅନ୍ତୁ ସେଥିରେ ମୋର ଯାଏ ଆସେ କ'ଣ ।

ରାଜ ଏଇକଥା ପଦକରେ ଯିମିତି ଗୋଟାଏ ରାହା ପାଇଲା । ଅଧରରେ ହସ ଫୁଟି ଉଠିଲା, ମୁହଁର ରେଖ ବଦଳି ଗଲା । ମନ ଖୁସିରେ ସିଗାରେଟ ଖଣ୍ଡେ ଲଗାଇ, ଆଉ ଖଣ୍ଡେ ସିଗାରେଟ ସୁରମା ଆଡ଼କୁ ବଢ଼େଇ ଦେଇ କହିଲା—ସିଗାରେଟଟା ଲଗାଅ । ସୁରମା ମୁହଁବୁଲାଇ କହିଲା—ଥାଉଥାଉ, ଆମେ ସେ ସିଗାରେଟ ଫିଗାରେଟ ଖାଉନା ।

ଥାନା ଘଣ୍ଟାରେ ଗୁଡ଼ିଏ ବାଜିଲା । ସୁରମା ଉଠି ଠିଆହେଲା । ରାଜ କହିଲା ଆଉଟିକିଏ ବସ । ସୁରମା କହିଲା—ନା, କାଲେ କିଏ ଉଠିବ, ତୁମକୁ ସିନା ଡରଭୟ ନାହିଁ । କାଲିଠାରୁ ଆଉ ଗୁରୁ ପାଖ ଦିନ ଆସିପାରିବି ନାହିଁ । ଆମର ପରୀକ୍ଷା । ଅଗା

ହାତରେ ଶଠିଦେବ । ଠାକୁରଙ୍କୁ ଡାକୁଥିବଟି । ଯିମିତ ଏ ପ୍ରସ୍ତ-ଷଟରେ ମୁଁ ପାସ କଟରେ । ରାଜଜଠି ଟିଆହୋଇ କହୁଲ—ତୁମେ ସିନା ଅଜ ଗୋଟାଏ କଥା ଠାକୁରଙ୍କୁ ଜଣାଇବାକୁ କହୁଲ, ମୁଁ ତ ପ୍ରତିଦିନ କେତେ କଥା ଜଣାଉଛି । ପୁରମା ଦ'ପାଦ ଆଗକୁ ଗୁଲି ଯାଉଁ ଯାଉଁ କହୁଲ—ତୁମର ଖାଲି ସବୁବେଳେ ସେଇକଥା ।

×          ×          +          ÷

ବାଲ୍ୟ ଚପଳତା ପ୍ରସ୍ତ ଗୁଡ଼ ନଥାଏ ଯୌବନ ଥାଏ କାହୁଁ ଟକଟେଡ଼ହୁଛରେ । ତଥାପି ଜୀବନର ଅଟେଳାଠାରେ ବାଳକ ହେଉ ବା ବାଳିକା ହେଉ ଯୌବନ ସମ୍ବନ୍ଧୀୟ ସବୁକଥ ଜାଣିବାକୁ ଇଚ୍ଛାହୁଏ ତାହାଙ୍କ ? ନୂଆ ନୂଆ କଥାର ସନ୍ଧାନ କରିବାକୁ ମନ ଏତେ ଦଉଡେ କାହିଁକି ?

ଅଶା, ରାଜ ଶଠି ନେଇ ଅପାକୁ ଦିଏ ଆଉ ଅପା ଶଠି ଅଣି ରାଜକୁ ଦିଏ । ଇମିତ ଦିନପରେ ଦିନ ଗଡ଼ିଗୁଲେ । କିନ୍ତୁ ଦିନେ ଆଶା ଚେଇଁ ଶୋଇଲ ବେଳେ ନଟେଇ ପଢୁ ପଢୁ ଅଙ୍କା ହୋଇ ବସିଯାଇଁ ଭାବେ । ସ୍ତଜୁଭାଇ ଅପା ଶଠି ପଢ଼ି ଏତେ ଆନନ୍ଦ ହୁଏ ତାହାଙ୍କ ? ଆଉ ଅପା ରାଜଭାଇଠାରୁ ଶଠି ଖଣ୍ଡିଏ ପାଇଲାକ୍ଷଣି ତା' ମୁହଁରେ ହସ ଫୁଟିଉଠେ କାହିଁକି, ମୁଣ୍ଡରେ ହାତଦେଇ କେତେ କ'ଣ ଭାବେ—ଯେତକ ଭାବେ ସେତକ ତା ମନରେ ରହସ୍ୟ ବଢ଼େ ।

ଦିନେ ରାଜ ଅଶା ହାତରେ ଖଣ୍ଡେ ଶଠି ଦେଇ କହୁଲ— ଅପାକୁ ଦେବୁ । ଅଶା ମନରେ କେଉଁ ଦିନଠୁଁ ରହସ୍ୟର ଭେଦ୍

ଖେଳୁଥିଲା । ଏ ଚିଠି ଖଣ୍ଡିକ ପାଇ ଭାବିଲା—ଆଜି ସେ ଚିଠି ଖଣ୍ଡିକ ପଢିବ । ବ୍ଲାଉଜ ଭିତରେ ଚିଠି ଖଣ୍ଡିକ ନେଇ ଚାଲିଗଲା । ପଢ଼ିବା ଘରେ ଏକୁଟିଆ ବସି, ବକ୍ଷ ଭିତରେ ଚିଠିଟି ଖୋଲିଧରି, ଖୁବ ଆଡକୁ ଅନାଇ ପଢିଗଲା । ଯେତିକି ପଢୁଥାଏ ସେତିକି ତାକୁ ଭଲ ଲାଗୁଥାଏ । ଚିଠି ଶେଷରେ ଲେଖା ଅଛି—"ମୋହନ", ଆସିବ । ଚିଠିଟି ପଢ଼ି ସାରି ଅଣା ସୁରମାକୁ ଦେଇଦେଲା । କିନ୍ତୁ ସେହିଦିନଠାରୁ ଅଣା ମନରେ 'ମୋହନ' ଶବ୍ଦଟା ଦାଗ ପରି ରହିଗଲା । 'ମୋହନ' ଶବ୍ଦଟି ଯିଏ ଯେତେବେଳେ କହେ, ଅଣା ସେ ଯେତେବେଳେ ତାହାକୁ କହେ ସେତେବେଳେ ତାକୁ ଭାରି ଭଲ ଲାଗେ; କିନ୍ତୁ କାହିଁକି ଭଲ ଲାଗେ, ସେ ଜାଣି ପାରେନା । ଯେତିକି ଭାବେ ସେତିକି ଅଧିକ ରହସ୍ୟ ବଢେ । "ଯୌବନ କାହିଁ କେତେ ଦୂରରେ !"

× × × ×

ପରୀକ୍ଷା ସରିଲା । ଅଣାର ବାପା, ଭାଇ, ଭଉଣୀ ମାନେ ସୁରମା ଲେଖି ଲେଖି ଆସେ—ଆଜ ଘରକୁ । ଦୁହିଁଙ୍କର ଦିନ ଗୁଡ଼ିକ କଟିଯାଏ ସ୍ୱପ୍ନପରି ।

ଦିନେ ହଠାତ୍ ସୁରମା ଅଣା ହାତରେ ଖଣ୍ଡେ ଚିଠି ଦେଇ ପଠାଇଲା ।

ସ୍ନେହର ରାଜୁବାବୁ—

କାଲି ବିଶେଷ କାମ ଥିବାରୁ ଯାଇ ପାରିଲି ନାହିଁ—କ୍ଷମା ଦେବେ । ଆଜି ଠିକ ଦୁଇଟା ବେଳେ ଯିବି । ଅନୁଗ୍ରହକରି ମୁଁ ଆପଣଙ୍କ ପାଖକୁ ଯେଉଁ ଖଣ୍ଡି ଚିଠି ଦେଇଛି, ତାହା ସଂଗ୍ରହ କରି

ରଖିଥିବେ । ସେଥିଭିତରୁଁ ମୋର ଗୋଟାଏ କଥା ଜାଣିବାର ଅଛି, ଦେଖା ହେଲେ ସବୁ କଥା କହିବ । ନମସ୍କାର ।

ଆପଣଙ୍କର
ସୁରମା ।

ରାଜ କିଛି ବୁଝି ପାରିଲେ ନାହିଁ । ସୁଟକେଶରୁ ସବୁ ଶାଢ଼ି ଗୁଡ଼ିକ ବାଛି ବାଛି ରଖିଲା ।

× × × ×

ସେହିଦିନ ରାତି ଦୁଇଟା । ରାଜ ମନ ସବ୍ଗରେ ଚେୟାର ଉପରେ ବସି ଉପରକୁ ଅନାଇ ସୁରମା କଥା ଭାବୁଛି, ସୁରମା ଦୁଆର ମୁହଁରେ ଆସି ଠିଆ ହୋଇଗଲା । ରାଜ ଅଳ୍ପ ଟିକିଏ ଟେଢ଼ା ହୋଇ ସୁରମାକୁ ଅନାଇ ଚମକି ପଡ଼ିଲା । ସବୁଦିନ ପରି ସୁରମା ମୁହଁରେ ଆଉ ଦୁଷ୍ଟାମି ହସ ନାହିଁ । ସାରା ମୁହଁଟିରେ ପଡ଼ିଛି କେମିତି ଗୋଟାଏ ବିଷାଦର ମଳିନ ଛାୟା । ବାଳ ଗୁଡ଼ିକ ଅଯତ୍ନ ଭାବରେ ଏଣେ ତେଣେ ଝୁଲୁଛି । ତଳକୁ ମୁହଁ ପୋତି ଗୋଡ଼ର ବୁଢ଼ା ଆଙ୍ଗୁଠିରେ ଦୁଆର ବନ୍ଧଟାକୁ ଘଷୁଥାଏ ।

ରାଜ ଉଠି ପଡ଼ି କହିଲା— ସୁରମା, ତୁମ ଦେହ କ'ଣ ହୋଇଛି ? ତୁମେ କାହିଁକି ଏମିତି ଦେଖା ଯାଉଛ ! ସୁରମା କିଛି ଜବାବ ଦେଲା ନାହିଁ । ଖଟ ଉପରେ ଯାଇ ବସିଲା । ରାଜ ତା' ପାଖରେ ବସି ପଡ଼ି ହାତଟାକୁ ଧରି ପକାଇ କହିଲା—ସୁରମା, ଦେହ କ'ଣ ହେଲା ? ସୁରମା ଅଧରରେ ଟିକିଏ କରୁଣ ହସ ଫୁଟାଇ କହିଲା —ହଁ ଦେହଟା ଟିକିଏ ମୋର ଖରାପ ଅଛି । ଆପଣ ମୋର ଶାଢ଼ି ଗୁଡ଼ା ବାଛି ରଖିଛନ୍ତି ? ରାଜ 'ଡ୍ର' ଭିତରୁ ଶାଢ଼ି ଗୁଡ଼ିକ ବାହାର କରି କହିଲା— ନିଅ । ସୁରମା ହାତ ବଢ଼ାଇ ନେଲା ।

ସୁରମା ଶଠି ଗୁଡ଼ିକ ଦେଖୁଥାଏ, ରାଜ ତା ମୁହଁକୁ ଅନାଇ ରହୁଥାଏ, ତାହାର ପାଟିରେ କଥା ନାହିଁ । କେତେ-ବେଳେ ପରେ ସୁରମା ବଡ଼ ଦରଦ ସ୍ୱରରେ କହିଲେ—ଆଗେ ବାର କବାଟଟା ଦେଇ ଆସନ୍ତୁ, ଅନେକ କଥା ଅଛି ।

ରାଜ ଆଉ କିଛି ଉତ୍ତର ଦେଲା ନାହିଁ । ଟର୍ଚ୍ଚ ଆଲୁଅଟି ଧରି ବାରକବାଟ ଦେବାକୁ ଗଲା ।

ରାଜ ଗଲାରୁ ସୁରମା ଶଠି ଗୁଡ଼ିକ ତଳେ ଜୁଣ୍ଡାଇ ପକାଇ, ଦିଆସିଲିଠା ମାରି ଦେଲାରୁ, କାଗଜ ଗୁଡ଼ା ହୁ ହୁ ହୋଇ ଜଳି ଉଠିଲା । ଏ ନିଆଁ ଟା ସଦାରେ ଜଳିଲା ନାହିଁ ଯେ, ସୁରମା ଅନ୍ତରରେ ଜଳିଲା । ଆଉ ସେ ଦେହଟାରେ ଟିଅ ହୋଇ ପାରିଲା ନାହିଁ ; ଆଖିରେ ଲୁଗା ଦେଇ ହୁଁ ହୁଁ ହୋଇ କାନ୍ଦି ଉଠିଲା ।

ରାଜ ବାରି କବାଟ ଦେଇ ଆସି ଦେଖେତ, ତାର କେତେ ଆଦରର ଶଠି ଗୁଡ଼ିକ ଜଳି ଯାଉଛି, ଆଉ ସୁରମା, ଦେହଟି ଠିଅ ହୋଇ କେଁ କେଁ ହୋଇ କାନ୍ଦୁଛି । ସେ ଆଉ ଅପେକ୍ଷା କରି ପାରିଲା ନାହିଁ, ଟର୍ଚ୍ଚ ଆଲୁଅଟା ଫୋପାଡ଼ି ଦେଇ ସେହି ନିଆଁ ଭିତରୁ କେତେଖଣ୍ଡ, ଦରପୋଡ଼ା କାଗଜ ଟାଣି ଆଣି କହିଲା—ସୁରମା, ତୁମେ କ'ଣ କଲ ! ମୋର ଅତି ଆଦରର ଶଠି ଗୁଡ଼ା ପୋଡ଼ି ପକାଇଲ ! ସୁରମା ବାଧା ଦେଇ କାନ୍ଦି କାନ୍ଦି କହିଲା—ନା, ସବୁ ଜଳି ଯାଉ, ଆଉ ସେ ଗୁଡା ଛୁଅଁ ନା । ମୋର ଅଜଣାରୁ ସବୁ ଜଳି ଯାଇଛି । ମୁଁ ଆଜି ତମର କିଏ, ମୋତେ କ'ଣ ଏଇଥି ଲାଗି ଏତେ ଭଲ ପାଉଥିଲ, ଦାଣ୍ଡ ଘାଟରେ ମୋ ନାମରେ ଦୁର୍ନାମ ରଟାଇବା ପାଇଁ । ଦେଖ୍ୟା ଆଉ ମୋ ଭିତରେ

କ'ଣ ରଖିଛି ! ବାପା, ଦେବାଉଙ୍କ ମୁହଁକୁ ଅଜ ଲାଜରେ ଗୁହଁ ପାରୁ ନାହିଁ । ମୁଁ ଅଜ ଜୀବନ ରଖିବ ଚାହୁଁବ, ରଖି ମୋର ଲାଭ କ'ଣ ? ସୁରମା ଆଉ କହି ପାରିଲା ନାହିଁ । ପାଟିରେ ଲୁଗା ଦେଇ ଖଟ ଉପରେ ବସିପଡିଲା ।

ବିଜ ବଡ଼ ବିସ୍ମିତ ହୋଇ, ରୁମାଲରେ ଆଖି ପୋଛୁ ପୋଛୁ ସୁରମାର ହାତଟିକୁ ଧରି ପଚାରି କହିଲା—ସୁରମା, ମୋ ପ୍ରାଣ, ତୁମେ ଅଜ କାନ୍ଦ ନାହିଁ, କଥାଟା ମୋତେ କ'ଣ କୁହ ?

ସୁରମା ହାତଟା ଛୁଆଁଇ ଦେଇ କୋହ ଉଠାଇ ଉଠାଇ କହିଲା——ନା, ମୁଁ ଅଜ ଆପଣଙ୍କର କ'ଣ ? ମୋତେ ଅଜ ଛୁଅଁ ନା । ମୁଁ ପିଲା ନୁହେଁ ଯେ ଭୁଲାଇ ଦେବ ।

ବିଜ କିଛି ବୁଝି ପାରିଲା ନାହିଁ । ମନେ ମନେ ଭାବିଲା—ସଂଚ ଦିନେ ହେଲେ କେଉଁଠି ପଦେ କିଛି କହିନାହିଁ, ଅଜ ସୁରମା ନାମରେ ଦୁର୍ନାମ ରଟାଇଲା କେମିତି ? ପୁଣି ବିଜ ସୁରମାର ହାତକୁ ଧରି ପଚାରି କହିଲା—ସୁରମା, କଥାଟା ନ କହି ତୁମର କାନ୍ଦିବା ଠିକ୍ ହେଉନାହିଁ । ମୋ ପ୍ରାଣ, କ'ଣ କୁହ । ମୁଁ ତ ତୁମ ନାମରେ କେଉଁଠି କିଛି ଦିନେ ହେଲେ କହି ନାହିଁ ? ଯଦି କେଉଁଠି କ'ଣ ଶୁଣି ଥାଅ, ତାହାହେଲେ ସେ ସବୁ ମିଛ, ମୋତେ ବିଶ୍ୱାସ କର—ସୁରମା !

ସୁରମା ଆଖିରୁ ଲୁହ ପୋଛୁ ପୋଛୁ ଉଠି ଠିଆ ହେଲା । ଓଠ ଦୁଇଟି ଥରୁଥାଏ, ଘୂନନ୍ତ ଆଖି ଦୁଇଟି ଲୁହ ଦଗେ ନାଲିଆ ହୋଇ ଯାଇଥାଏ । ମୁହଁ ବୁଲାଇ ଚାଲି ଯାଉଁ ଯାଉଁ କହିଲା—

ଏତେବ ଅପଣ ସୁଖରେ ରହନ୍ତୁ, ମୁଁ ଚିନା ଅଡ଼ୁଆ ହେଉଥିଲି ଯାହା କାନ ,ର ଶୁଣିଲି, ଯାହା ଆଖିରେ ଦେଖିଲି, ସେଥିପାଇଁ ପାଇଁ ଘରେ ମୁହଁ ଦେଖାଇ ପାରୁନାହିଁ, ସେ କଥା ମୁଁ କିଛି ବୁଝିବ ନାହିଁ କ ?

ସୁରମା ଯନ୍ତ୍ର ଚାଲିଲା ପରି ଚାଲିଲା । ରାଜ ତା'ର ପଛେ ପଛେ ଚାଲି ଚାଲି କହିଲା—ସୁରମା, ମୁଁ କଣ ତୁମର ଏତେ ପର ହୋଇ ଗଲି ! କଥା ପଦେ ଶୁଣିବା କରୁଗଲ ନାହିଁ । ଯି ଯାହା କହୁଥିବ ସବୁ ମିଛ, ତୁମେ ଫେରି ଆସ । ସୁରମା ଆଜି ଫେରିଲା ନାହିଁ । କହିଲା—ଯିଏ ଯାହା କହିଲା, ତା' ନାଁ କହି ଆପଣଙ୍କୁ ଅଜ ଦାଣ୍ଡ ଘାଟରେ ଦୁର୍ନାମ ରଟାଇବାକୁ ସୁବିଧା ଦେବି ନାହିଁ । ସୁରମା ପୁଣି ଚାଲି ଉଠିଲା ।

ରାଜ ଟୋକାଟାକୁ ଚୁପି ରହି କହିଲା—ତୁମେ ଯାଅ ପଛେ ସୁରମା, ତୁମେ ମୋତେ ଆଜି ଅବିଶ୍ୱାସ କରୁଛ, ମୋର ଜୀବନ ଜଳାଇ ଦେଇ ଯାଉଛ, କିନ୍ତୁ ଦିନେ ବୁଝି ପାରିବ "ଭୁଲ୍ ଭାଙ୍ଗାର ?" ସୁରମା ତା' କଥାରେ ଆଉ କାନ ଦେଲା ନାହିଁ ସେହି ଘୋର ଅନ୍ଧାର ରାତିରେ ଗୋଡ଼ ଚପି ଚପି ଚାଲିଗଲା ।

ରାଜ ସେହି ବାଟରେ ବଣ୍ଡେ ପଥର ପାଲଟିଲା ପରି ଠିଆ ହୋଇ ରହିଲା । ଗୁଡ଼ୁଆଡ଼େ ନଈର ସୁ ସୁ ଗର୍ଜନ । ଆକାଶର କୋଟି କୋଟି ତାରା ତା' ଦୁଃଖରେ ଆଖି ମିଟିକା ମାରି ଲୁହ ଢାଳିଲେ । ରାଜର ମୁଣ୍ଡ ଘୂରିଗଲା । ରୁମାଲ ଖଣ୍ଡକରେ ଲୁହ ପୋଛୁ ଆସି ଚେୟାର ଉପରେ ବସିଲା । ଅବଶ୍ୟ ଶୋଇଲା ନାହିଁ । ଉପରକୁ ଚାହିଁ ଚାହିଁ ରାତି ଗୋଟାକ ପାହିଲା ।

ସେଦିନ ପରେ କଅଁଳ ସୂର୍ଯ୍ୟ ଆକାଶରେ ଉଇଁଲେ । ରାଜ ମନ ଦୁଃଖରେ ଅଠଟା ବେଳେ ଉଠି ବାହାରକୁ ଆସିଲା । ଆଜି ତା' ଆଖିରେ ଘର ଦୁଆର, ଖାଇବା ପିଇବା ସବୁ ବିଷ ପରି ବୋଧ ହେଉଥାଏ । ଚମ୍ପା ଗଛ ମୂଳକୁ ଗଲା—ଫୁଲ ଭାରରେ ଗଛଟି ନଇଁପଡୁଛି, କିନ୍ତୁ ଆଶା ଆଜି ଗଛମୂଳେ ଡାଳଟି ଭିଡି ଗୁଣୁ ଗୁଣୁ ଗୀତ ବୋଲୁ ନାହିଁ କି, ଉଙ୍କି ହୋଇ ଉପର ଡାଳରୁ ମୁଠି ମୁଠି କରି ଫୁଲ ତୋଳୁ ନାହିଁ । ରାଜର କୋହଟା ଆହୁରି ବଢ଼ିଗଲା ।

ରାଜ ବାହାରି ଯାଉଛି, ଗ୍ରାମର ଲୋକଟି ଆସି କହିଲା—ବାବୁ, ଦଫାଦାରଟି ବାବୁଙ୍କ ଘରେ ଆଜି କ'ଣ ହେଉଛି କି, ସୁରମା ଦେଈ, ଆଉ ଅନ୍ୟ ଦୁଆରକୁ ନେଇଁ ଆଶା ଦେଈ ଆସନ୍ତି ଯେ କୁଆଡେ଼ ଯାଉଛନ୍ତି । ତାଙ୍କ ବାକ୍ସ ଲୁଗା ସେ ଡାଗାଡ଼ିଟାରେ ବୋଝେଇ ହେଉଛି । ସୁରମା ଦେଈ, ଆଶା ଦେଈ ମୁହଁରେ ଲୁଗା ଦେଇ କାହିଁକି କାନ୍ଦୁଛନ୍ତି । ରାଜ ଚମକିଲା ପରି ଦଫାଦାରଙ୍କ ଦୁଆର ମୁହଁକୁ । ଗାଡ଼ିଟା ସେତେବେଳକୁ ଗଲାଣି । ରାଜ ଆଖି ଝରକାରେ ଆଶାର ଆଖି ମିଳିଗଲା । ଆଶା ରାଜକୁ ଟିକିଏ ଅନାଇ ଦେଇ ତଳକୁ ମୁହଁ ପୋତିଲା । ତା' ମୁହଁଟି ଶୁଖି ଯାଇଥାଏ । ରାଜର ମନରେ ଆହୁରି କଷ୍ଟ ହେଲା । ଗାଡ଼ି ଗଲା ତା' ପଥରେ । ରାଜ ଲୁହ ଛଳ ଛଳ ଆଖିରେ, ଗାଧୁରେ କେତେ ବେଦନା ଧରି ଫେରିଲା ।

× × × ×

ସେହି ଦିନଠାରୁ ସୁରମା, ଆଶା ଗାର୍ଲସ୍କୁଲ ହୋଷ୍ଟେଲ୍ ନୂହ ଯେ—ପିଞ୍ଜରରେ ରହିଲେ ।

ଦିନ ପରେ ଦିନ ଗଡ଼ି ଚାଲିଗଲା । ରାଜ ମନରେ ଅ ସୁଖ ନ ଥାଏ । ଖାମଖିଆଲଙ୍କ ପରି ଘଣ୍ଟାଏ ଖାଏ, କଲେଜକୁ ଯାଏ । ଦେହ ପ୍ରତି ଜମାରୁ ଦୃଷ୍ଟି ରଖେ ନାହିଁ । ବେଳେ ବେଳେ ଲାଇବ୍ରେରୀରେ ବସି ଭାବେ—ସୁରମା ନାଁରେ ସେ କ'ଣ କେଉଁଠି ଦେବ କହୁଛି ? ଆଉ ସୁରମା ତା'ର ପାଇଁ କ'ଣ ଦେ ନାହା—ଏତେ କଷ୍ଟ ସହୁଛି ? କେତେ ଭାବେ, କିନ୍ତୁ କିଛି ମନେ ପଡ଼େ ନାହିଁ । ଚୋଟାଏ ଦୀର୍ଘ ନିଶ୍ୱାସ ପଞ୍ଜରା ଭିତର ବାହାରି ପଡ଼େ । ଆଖିରେ ଲୁହ ଆସେ ।

× × × ×

ସୁରମା ନ ସେ ହେବ ହୋଷ୍ଟେଲରେ ରହିଲଣି, ଏହି ମାସକ ଭିତରେ ସାଙ୍ଗ ମେଳରେ ବହୁ କେତେ ସେ ଚେଷ୍ଟା କରୁଛି, ସବୁ ପଛ କଥା ଗୁଡ଼ାକ ଭୁଲି ଯିବାକୁ, କିନ୍ତୁ ଭୁଲି ପାରୁ ନାହିଁ । ସ୍କୁଲକୁ ଯାଏ – ଆସେ । ବହି ଗୁଡାକ ପଢ଼ି ବସିଲେ ସେଇ କଥା ମନେ ପଡ଼ି କେତେ କ'ଣ ଭାବେ, ଆଖି କୋଣରେ ଲୁହ ଆସେ । ରାତିରେ କେତେ ଥର ସେ ସପନ ଦେଖିଛି—"ରାଜର ଅତି ନିକଟରେ ସେ ବସିଛି, ରାଜ ତା' ଦେହ ଗୁରୁପଟେ ହାତ ବୁଲାଇ, ବଡ଼ ଆଦରରେ ଡାହାଣ ହାତର ନହି ଆଙ୍ଗୁଠିଟି ତାର ଓଠରେ ମାଡ଼ିଦେଇ ହସି ହସି କହୁଛି—ତୁମେ ଭାରି ସୁନ୍ଦର, ନୁହେଁ ସୁରମା ? ସୁରମାର ନିଦ ଭାଙ୍ଗି ଯାଉଛି । ବେଦନାରେ ଛାତିଟା ଚାପି ଧରି ଶୋଇ ରହୁଛି ।"

ସୁରମା ଯେଉଁ ରୁମରେ ଥାଏ, ସେହି ରୁମରେ ଥାଏ 'ବିନ୍ଦୁ' । ଗୋରି ତକ ତକ ହୋଇ ଚଉଦ ପନ୍ଦର ବରଷର ଝିଅ

ଟିଏ । ମୁହଁଟି ଭାରି ସୁନ୍ଦର । ଉଜାଣିଆ ଆଖି ଦୁଇଟି ଦେଖିଲେ, ହସ ହସ ଗୋଲାପି ଶବୁଲଟି ଦେଖିଲେ—ଜଣା ପଡ଼େ ଯେମିତି ଦୁନିଆର ଭଲ ମନ୍ଦ ତା' ମନକୁ ଛୁଇଁ ନାହିଁ । ବେଶ ଭୂଷାର ଆଡ଼ମ୍ବର ନାହିଁ । କାନରେ ସୁନାର ଫୁଲ୍ ଦୁଇଟି । ହାତରେ ସୁନା କାଚ ଦ' ଦ' ପଟି । ସାଧା ଲୁଗା ଖଣ୍ଡି ପିନ୍ଧି ଗଲେ ଜଣାଯାଏ—ଏଠେ ଯେମିତି ଗୋଟାଏ ଶାନ୍ତ ପ୍ରତିମା । ରୂପ ଯେମିତି—ଗୁଣ ବି ସେମିତି । କାହାର ମୁହଁ ଟିକଏ ଶୁଖିଲା ଦେଖିଲେ ତା' ମୁହଁଟି ବି ଶୁଖିଯାଏ । ପଛେ ପଛେ ଗୋଟେଇ ଲେଟେ ଫାଟେଇ ହୁଏ । କେବେ କେବେ ସୁରମାର ମୁହଁଟିକୁ ଦେଖି ସ୍ନେହରେ—ସୁରମା ଅପା, ତୁମେ କାହିଁକି ଆଜି ଦିନୁ ମିଛି ମନ ମାରି ବସୁଛ ? ସୁରମା ହାଁ ଟେରେଇ ଦେଇ କହେ—ମା ଦେହ ଭଲ ନାହିଁ; ଆଉ କେଉଁଦିନ କହିବି, ଘର କଥା ନେ ପଡ଼ୁଛି ।

×          ×          +          ÷

ସେଦିନ ଶଜ ଚୌକି ଉପରେ ବସି ଅତୀତର କଥା ଭାବୁଛି ।କ ପିଅନ ସଲାମ କରି ଝଣ୍ଡେ ଚିଠି ବଢ଼ାଇ ଦେଇ ଚାଲି ଗଲା । ଙ୍କ ଚିଠି ଖୋଲି ପଢ଼ିଲି ।

ସ୍ନେହର ରାଜକିଶୋର,

ତୁମକୁ ଗୋଟାଏ ଖୁସି ଖବର ଦେବାକୁ ଡର ମାଡ଼ୁଛି । ଲେ ତୁମେ ମୋତେ ଭୁଲିଯିବ ।

ଏତେ ଦିନ ଯାଏ ଲଢ଼ି ଲଢ଼ି ତୁମ ମନଲାଖି ଭଲ କନ୍ୟା- ା ଠିକ୍ କରିଛି, ଏହି ମାସ ତା ୧୫ ଶଖରେ ବାହାଘର ।

ତା ୧୨ ତାରିଖଦିନ ତୁମ ଘର ଷ୍ଟେସନ ଜଙ୍କସ ଆଣିବାପାଇଁ ଉଠେଇ ଯିବେ । ତାଙ୍କ ସଙ୍ଗେ ଆସିବ ଆସିଲା ବେଳକୁ 'ମୋ ପାଇଁ କ'ଣ ଆଣିଥିବ, ନୋହିଲେ ମଧୁଶଯ୍ୟା ଦିନ ଦି'ଜଣଙ୍କୁ ଅଲଗା ଅଲଗା ପଠାଇ ଦେବି ଯେ—ତୁମ ମନ ବୁଝୁଥିବ । ଚଞ୍ଚଳ ଆସିଲେ ପ୍ରେୟସୀଙ୍କର ଫଟ ଦେଖିବ ।

ତୁମର
"ନୂଆବୋହୂ"

ଏତେଦିନ ଅଶାନ୍ତି ଭିତରେ, ଏ ଚିଠି ଖଣ୍ଡିକ ପାଇ ଶାନ୍ତି ପାଇଲା । ତାକୁ ଲାଗିଲା ନୂଆବୋହୂଙ୍କର ଚିଠିଟି ଭିତରେ ଯେପରି ସ୍ନେହ, ଶାନ୍ତି, ଆଦର, ଆସ୍ଥା କେତେ କ'ଣ ପୂରି ରହିଛି । ଅନେକରେ ଏତେ ଦିନକେ ତା' ମୁହଁରେ ହସ ଫୁଟି ଉଠିଲା ଭାବିଲା—ସୁରମା ପାଇଁ ସେ ଜୀବନ ଉତ୍ସର୍ଗ କରିଥିଲା, କିନ୍ତୁ ତୁଚ୍ଛାରେ ତାକୁ ସେ ଅବିଶ୍ୱାସ କରି ଯାଇଛି । ଦିନେ ସେ ବୁଝିବ "ଭୁଲ କାହାର" ? ଆଜି ତୁଚ୍ଛରେ ମରୀଚିକା ପଛରେ ଦୌଡ଼ାଇ ତା ଜୀବନକୁ ହା-ହୁତାଶ କରିବ ନାହିଁ । ପୁଣି ନୂଆକରି ଜୀବନ ଆରମ୍ଭ କରିବ ।

ସେହିଦିନ ସଞ୍ଜରେ ବ୍ରଜ କେତେ କଣ ଭାବି ଭାବି ଲେଖିଲା—ସ୍ନେହର ସୁରମା,

ବୋଧହୁଏ ମୋତେ ଭୁଲି ଯିବଣି, କିନ୍ତୁ ମୁଁ ଭୁଲି ନାହିଁ ଯେଉଁ ଦିନ ଯାଏ ଏ ଦେହଟା ମାଟି ଗୋଡ଼ି ସଙ୍ଗରେ ମିଶି ଯାଇଛି, ସେତେଦିନ ଯାଏ ମୁଁ ତମକୁ ଭୁଲି ପାରିବି ନାହିଁ ତୁଚ୍ଛାରେ ମୋତେ ଅବିଶ୍ୱାସ କଲ, କିନ୍ତୁ ତୁମେ ଭୁଲ ବୁ

ବୁଝିଲେ ଜାଣିପାରିବ, ଦୋଷ କାହାର । ମୁଁ ଆଜି ଛୁଟିରେ ଯାଉଛି । ଦୁଇମାସ ପରେ ଫେରିବି । ମୋର ଅନୁରୋଧ ଯଦି କେବେ ଭୁଲରେ ଥରେ ମନେ ପକାଅ, ସେହି ମୋର ଯଥେଷ୍ଟ । ତୁମର ମଙ୍ଗଳ କାମନା କରେ ।

ସ୍ନେହର ବନ୍ଧୁ
ରାଜକିଶୋର

ସବୁ ଚିଠି ଖଣ୍ଡିକ ଲେଖି ସାରି ଗାର୍ଲସ୍କୁଲ ଠିକଣାରେ ଡାକଘରେ ପକାଇ ଦେଇ ଆସିଲା ।

ତହିଁ ଆର ଦିନ ପୋଷ୍ଟ ପିଅନ, ସୁରମାକୁ ଚିଠି ଖଣ୍ଡିଏ, ବକୁଳକୁ ବୋଡିଏଟା ଟଙ୍କା ଆଉ ଚିଠି ଖଣ୍ଡିଏ ଦେଇଗଲା । ସୁରମା ଚିଠି ଖଣ୍ଡିକ ଖୋଲି ପଢି, ଦଣ୍ଡେ ଦେହି ଅଡ଼କୁ ନିଶ୍ଚଳ ଭାବେ ଚାହିଁ ରହିଲା । ତା'ପରେ ଗୋଟାଏ ଦୀର୍ଘ ନିଶ୍ୱାସ ମାରି ଚିଠି ଖଣ୍ଡିକ ଟ୍ରଙ୍କ ଭିତରେ ରଖି ଦେଲା ।

ବୋଡ଼ିଂ ବାରଣ୍ଡାରେ ବକୁଳ ଚିଠି ଖଣ୍ଡିକ ପଢୁ ପଢୁ କହିଲା, ସୁରମା ଅପା, ଘରୁ ନୂଆ ବୋହୂଟି କ'ଣ ଚିଠି ଦେଇଛନ୍ତି, ପଢିଲଣି ? ଏହା କହି ଚିଠି ଖଣ୍ଡିକ ସୁରମା ହାତକୁ ବଢ଼ାଇ ଦେଲା । ସୁରମା ପଢ଼ିଲା—

ସ୍ନେହର ବକୁଳଲତା,

ଆଜି ଶୁଣି ଭାରି ଖୁସି ହେବ ଯେ—ତୁମର ବାହାଘର ଆଉ ମୋଟେ ୭୮ ଦିନ ରହିଲା । ତୁମଲାଗି ବାଛି ବାଛି ମୁଁ ଏବେ ତୁମ ହିମ ଛବି ରସିକ ନାଗରଙ୍କୁ ପସନ୍ଦ କରିଛି । ବୟସ

ଅଳ୍ପ, ତୁମେ ତାଙ୍କ ବେଳ ଭଲକୁ ହେବ । ତାଳିଅ କରିକୁ ବାହା' ହେବାକୁ ମନା କରୁଥିଲ, ତୁମର ମନ ଲକ୍ଷ ଠାକୁରେ । ଫଳଦେଇଛନ୍ତି । ବରଷଟି ତୁମର ପର ଭଳ ଭଳ ଗୋଗ । ମନ ଖୁସିରେ ଅଜ୍ ପତ୍ରୁ ପତ୍ରିକା ତୁମ ବର ସନ୍ଧାନରେ କୁଅଡ଼େ ଗୁଲିପିବ ନାହିଁ । ଦମ୍ଭ ଧରିଥିବ, ଅଜ୍ ମୋଟେ ଅଠ ଦନ । ବାପା ୨୦ ଟଙ୍କା ପଠାଇଲେ, ତୁମେ ସ୍କୁଲ ବୋର୍ଡ଼ିଂର ଯାହା ବାକଥିବ, ଶୁଣ୍ଡାଇ ଦେବ । ତୁମ ଭାଇଙ୍କ ପାଖକୁ ଢେଙ୍କାନାଳ ତାର ହୋଇଛି । ସେ ଏଇ ଦୁଇ ଦନେ ଅସି ପହଞ୍ଚିବେ । ବାପା ଏଇ ଦୁଇତନି ଦନ ମଧ୍ୟରେ ତୁମକୁ ଅଣିବାପାଇଁ ଯିବାକୁ କହୁଥିଲେ, ଏତେ ବଡ ଖୁସି ଖବରଟା ଦେଲି, ଅସିଲା ବେଳକୁ ମୋ ପାଇଁ କିଏଁ ଅଣିବ ଦେଖିବା । ଶଠ ପାଇ ମନେ କରିବ । ଏତିକିରେ ରହିଲି ।

ତୁମର ସ୍ନେହର

"ନୂଆବୋହୂ"

ଦଣ୍ଡକ ମଧ୍ୟରେ ହଷ୍ଟେଲରେ ହୁରି ହୋଇଗଲା ଯେ ବଦୁ ସ୍କୁଲ ଛାଡ଼ି ଗୁଲିଯିବ । ତାର ବାହାଘର ଅଜ୍ ଅଠ ଦନ ରହିଲା । ସବୁ ଝିଅମାନେ ତା' ଗୁରିପଟେ ଘେରି ଗଲେ । ବଦୁ ଝାଙ୍କିଳା ପର ମଝିରେ ଠିଆ ହୋଇଥାଏ । ରାଜରାଣୀ ତାକୁ ହଲାଇ ଦେଇ କହିଲା—ବଦୁ, ମନେ ପକାଉଥିବୁ ଟିକେ ମଧ୍ୟେ ଯେ ଘରେ । ସ୍ନେହଲତା ହସି ହସି ତା ମୁହଁଟିକୁ ଟେକି କହିଲା ନା' ! ବଦୁ, ଭଲ ସାଙ୍ଗଟେ ମିଳିଗଲା, ଅମକୁ ଅଉ ମନେ କରିବୁ ନା' ! ବଦୁର ମୁହଁଟି ଲାଜରେ ସୁନ୍ଦର ବୋଲା ହେଲା

ଘର ଦେଖା ଯାଉଥାଏ । ଖାଲି-ମୁହଁକୁ ମୁହଁକ ହସିଲା, କାହାକୁ କିଛି କହିଲା ନାହିଁ । କିଏ କେତେ ରକମ କହି ଗୁଣିଗଲେ ।

× × × ×

ଦିନ ଘନେଇ ଆସିଲା । ବହୁର ବାପା ତାକୁ ନେବାକୁ ଆସିଲେ । କେତେ ଦିନର ସାଥୀ ଭଉଣୀମାନଙ୍କ ଠାରୁ ଦୂର ପାଇଁ ଛାଡ଼ି ଆଜି ଯିବ, ସେଇଥିପାଇଁ ବହୁର ଅନ୍ତରରୁ ଗୋଟାଏ ପରେ ଗୋଟାଏ କୋହ ଆସୁଥାଏ । ହଷ୍ଟେଲର ସବୁ ଝିଅଙ୍କୁ ଯାଇଁ ସାଥୀ ଭଉଣୀମାନଙ୍କୁ କେତେ କଥା କହି, ଆଖିରୁ ଲୁହ ପୋଛି ବିଦାୟ ଆଣିଲା । କିଏ କେତେ କଥା ବୁଝାଇଲେ । ଶେଷରେ ସୁରମା ପାଖକୁ ଆସି କହିଲା—ତୁ ମୋର ଧର୍ମର ଭଉଣୀ, ମତେ ପର କରି ଦେବୁ ନାହିଁ, ଚିଠି ଦେବୁ । ସୁରମା ତା ଆଖିରୁ ଲୁହ ପୋଛି ଦେଇ କହିଲା—ତୁ ମୋତେ ଛାଡ଼ି ଯାଉଛୁ ବୋଲି ମୋ ମନରେ ଯେ କେତେ କଷ୍ଟ ହେଉଛି, ତୁ କେମିତି ଜାଣିବୁ ଲୋ ! ତୁ ମୋ ପାଖକୁ ଆଗ ଚିଠି ଦେବୁ । ତୋ ବର ଫଟୋ ପଠାଇବୁ, ଆମ ଘର ଠିକଣା ଜାଣିଛୁ, ଆଉ କ'ଣ ଅସୁବିଧା ।

ଘୋଡ଼ାଗାଡ଼ିବାଲା ଡାକିଲା—ଚାଲନ୍ତୁ, ଗାଡ଼ି ବେଳ ହୋଇଗଲା, ଚଞ୍ଚଳ ଆସନ୍ତୁ ବାବୁ ! ବହୁ ବାପା ଗୋପାଳବାବୁ ଡାକିଲେ—ବହୁ, ଗାଡ଼ି ବେଳ ହୋଇଗଲା ପରା ! ସୁରମା ଓ ହଷ୍ଟେଲର ସବୁ ଝିଅଗୁଡ଼ିକ ତାକୁ ଗାଡ଼ିରେ ବସାଇ ଦେଲେ, ଗାଡ଼ି ଗଲା ସିଧା ଷ୍ଟେସନ ।

× × × ×

ଦିନ ପରେ ଦିନ ଗଡ଼ି ଚାଲିଲା । ଏବୁ ଗଲା ଦିନୁ ସୁରମାର କଷ୍ଟଟା ଦୁଇଗୁଣ ବଢ଼ି ଯାଇଛି । ପଢ଼ି ବସିଲା ବେଳେ, ଟଣାଇଲା ବେଳେ ଭାବେ, ବନ୍ଧୁଟି ଏଇକ୍ଷଣି କ'ଣ କରୁଥିବ । ହୁଏ ତ ତାର ସ୍ୱାମୀ କୋଳରେ ମୁଣ୍ଡ ରଖି ଶୋଇଥିବ, ଅଜ ଦୁନିଆର କଥା ଗପୁ ଥିବ । ମଝିରେ ମଝିରେ ତାର ଝୁଲୁ ଝୁଲୁ ଗାଲରେ ଅଙ୍ଗୁଠିଟିଏ ମାରି ଦେଇ ତା ବର କହୁଥିବ, ତୁମେ ଭାରି ସୁନ୍ଦର ବନ୍ଧୁ । ତୁମକୁ ପାଇ ମୁଁ ଦୁନିଆକୁ ଭୁଲି ଯାଇଛି । ବନ୍ଧୁର ଆଖି ଦୁଇଟି ଆନନ୍ଦରେ, ଗର୍ବରେ ବୁଜି ହୋଇ ଯାଉଥିବ, ମୃଦୁହସି ହସି ତାର ସ୍ୱାମୀର ଚିଣ୍ଡା କାନ ତଳେ ମୁଣ୍ଡ ଲୁଚେଇ ଥିବ । କେମିତି ଭାବୁ ଭାବୁ ତା' ଛାତିଟା ଥରି ଉଠେ । ଅତୀତ ଜୀବନର ପ୍ରତ୍ୟେକ ଘଟଣା ଆଖି ଆଗରେ ଚଳଚ୍ଚିତ୍ର ପରି କୁଆଡେ଼ ଆସି କୁଆଡେ଼ ମିଳେଇ ଯାଏ । ସୁରମା ଦୀର୍ଘ ନିଶ୍ୱାସ ମାରେ, ଅନ୍ତର ଭିତରୁ କୋହ ଉଠେ । ଆଖି କୋଣରେ ଲୁହ ଜକେଇ ଆସେ ।

ହା-ହୁତାଶ ଦେଇ ସୁରମା ଜୀବନ କଟିବାକୁ ଲାଗିଲା । ବଡ଼ଦିନ ଛୁଟି ହେବାକୁ ଦୁଇ ଦିନ ଅଛି, ସୁରମା, ଆଶା ଦୁହେଁ-ଯାକ ହଷ୍ଟେଲରୁ ଅସିଲେ । ସେତେବେଳକୁ ଶରତବାବୁ ବଦଳି ହୋଇ ଯାଇଥାଆନ୍ତି । କଟକରେ ଥାଆନ୍ତି, ଦୁଇ ଭଉଣୀ, ମା, ପୃଷ୍ପାଙ୍ଗୀ, ସୁକଳା ।

ହଷ୍ଟେଲ ଛାଡ଼ି ଘରକୁ ଆସିଲା, ଟିକିଏ ଶାନ୍ତିରେ ରହିବା ପାଇଁ, କିନ୍ତୁ ଶାନ୍ତି କାହିଁ ? ଘର ଦୁଆର, ଲୋକବାକ, ସବୁ କେମିତି ମାୟା ମମତା-ଶୂନ୍ୟ-ପର ବୋଧ ହେଲା । ଚେତର୍ ଅଶାନ୍ତିକୁ ଦେଇ ଅଶାନ୍ତି ।

ଦିନେ ଦିନେ ସୁରମା ଛାତ ଉପରକୁ ଯାଏ । ତା ଆଖିରେ ପଡ଼େ ସେହି ଘରଟି । ଆଗ ପରି ଢାଞ୍ଚା ଠିକ ସେମିତ ଅଛି, ଫୁଲ ଗଛରେ ଡାଳଗୁଡ଼ିକ ନଇଁ ପଡ଼ିଛି । ମଣିଷ ଦେହ ନ ଥିବାରୁ ଦୁଆରଟି ଅଳିଆ ମଳିଆରେ ପୂରି ହତ-ଶ୍ରୀ ହୋଇଯାଇଛି । ଆଗ ପରି ଆଉ ନୈଷଧର ପିଣ୍ଡାରେ ବସି ଶୁକରଟୋକାଟି ଗୋପୀ-ଭାଷା କି ଭାଗବତ ବୋଲୁ ନାହାଁ । ତାର କେତୋଟି ଧନରସାଖି ରଙ୍ଗ, କୂଅ ମୂଳେ ବସି ଦାନ୍ତ ଘସୁ ନାହାନ୍ତି କି ଅଭ ଗୃହିଣିରେ ଉପରକୁ ଚାହୁଁ ନାହାନ୍ତି । ଶୋଇବା ଘରଟି ଆଖିରେ ପଡ଼ିଲେ ବେଳେ ସୁରମା ମନରେ ଭାରି କଷ୍ଟ ହୁଏ । ଏଇ ଘରେ କେତେ ରାତି ସେ ସ୍ୱର୍ଗ ସୁଖରେ କଟାଇ ଦେଇଛି । ଆଉ ଦେଖି ପାରେ ନାହିଁ । ଅନ୍ତରର କୋହଟାକୁ ଚାପି ରଖି ଆଖି ଫେରାଇ ଆଣେ ।

×          ×          ×          ×

ଦିନେ ସୁରମା ଓ ତାର ସବୁ ଭଉଣୀଗୁଡ଼ିକ ସିନେମା ଦେଖି ରାତି ନ'ଟା ବେଳେ ଘରକୁ ଫେରିଲେ । ଖାଇ ପିଇସାରି ଆଶା ଉପର ମହଲରେ ଗୀତ ବୋଲୁଥିଲା, ସମସ୍ତେ ଶୁଣୁଥାଆନ୍ତି । ସୁରମା, ତା' ଉଷା ଅପା ପଢ଼ିବା ଘରେ ବସି ଗପ ବହି ଖଣ୍ଡେ ଆଣିବା ପାଇଁ ବହିଗୁଡ଼ାକ ଖେଳାଉ ଥାଏ । ସବା ତଳ ବହିଟି ଖେଳାଉ ଖେଳାଉ ଖଣ୍ଡେ କାଗଜ ଛିଟିକୁ ଉଲଟି ଗଲା । ସୁରମା ପୁଣି ମୂଳରୁ ଓଲଟାଇଲା ବେଳକୁ କାଗଜ ଖଣ୍ଡ ବାହାରି ପଡ଼ିଲା । ପୁରୁଣା ଚିଠି ଖଣ୍ଡେ, ଉପରେ ଉଷା ନାଁ ଲେଖା ହୋଇଛି । ସୁରମା ଫିଟାଇ ପଢ଼ିଲା—

ସ୍ନେହର ଭଉଣୀ,

ଦେଖିଲ କେମିତି ତମ ବାପାଙ୍କ ଅନୁମାନ କରି ଚନ୍ଦ୍ର ସୁରମାକୁ ହସ୍ପିଟାଲକୁ ପଠାଇ ଦେଲି ! ତମେ ସବୁ ମନା କରୁଥିଲ, ମୁଁ ପାରିବି ନାହିଁ ବୋଲି ? ଏବେ କାମରେ ଦେଖି ପାରିଲ ? ଚିଠିଟା ଶରି ଫୋପାଡ଼ି ଦେବ ।

ସ୍ନେହର

**ବୀରକିଶୋର**

ସୁରମା ଚିଠି ଖଣ୍ଡି ପଢୁ ପଢୁ ତା' ଦେହଟା ଥରି ଉଠିଲା । ସଜଳ ଅଖି ଦୁଇଟି ଶୋଷି ହୋଇଗଲା, ଭାବିଲା—ତାହାହେଲେ ସେ ନିର୍ଦ୍ଦୋଷ ! ତାର ଅଶା, ଅଉ ଷାର୍ବାବୁ ତାଙ୍କୁ ଷଡ଼ଯନ୍ତ୍ରରେ ପକାଇ ଏତେ ହଇରାଣ କଲେ । ଅଉ ଭାବି ପାରିଲା ନାହିଁ । ପୁରି ଅଜି ତାଙ୍କୁ ଅନ୍ଧାର ଦେଖାଗଲା । ଗୋଟାଏ ପରେ ଗୋଟାଏ କୋହ ଗଳାର ବନ୍ଧନ ହଲାଇ ବାହାରି ଅସିଲା । ତାର ଅଖି ଆଗରେ ଖାଲି ଦେଖାଗଲା—ଶଙ୍କର ସେହି ସୁନ୍ଦର ମୂର୍ତ୍ତିଟି । ତାହିଁ କେତେ ଦୂରରେ ଗୋଟାଏ କ୍ଷୀଣ କରୁଣ ସ୍ୱର । ତାକୁ ଶୁଣା ଗଲା, କିଏ ଯେମିତି କହୁଛି—ସୁରମା, ତମେ ମୋତେ ଅବିଶ୍ୱାସ କଲ, ମୋ କଥା ନ ମାନି ପାଦରେ ଠେଲି ଦେଲ, ବର୍ତ୍ତମାନ ବୁଝ, ଭୁଲ କାହାର ?

ସୁରମା ପାଗଳଙ୍କ ପରି ପିଣ୍ଡାକୁ ଅସିଲା । ଭାବିଲା, ସେ ବଡ ଭୁଲ କରିଛି । ଅଜି ତାଙ୍କ ଚରଣ ତଳେ ମୁଣ୍ଡ ଲୋଟାଇ କ୍ଷମା ପ୍ରାର୍ଥନା ମାଗିବ, ଅଉ କହିବ—ମୋତେ ଅଜି ପାଖକୁ ନିଅ । ତୁମେ ଯାହା କହିବ, ମୁଁ ତାହା କରିବ । ବାପ, ମା' ସମସ୍ତଙ୍କ

ଜ୍ଞାଉ ତୁମ ସଙ୍ଗେ ଭବ ମାଗିବାକୁ ବ ମୁଁ ରାଜି ଅଛି। ତା' ଦେହଟା ଥରୁଥାଏ; ଥର ଥର ଗୋଡ଼ରେ ଚାଲି କବାଟ ପାଖକୁ। କବାଟ ଫିଟାଇ ଗୃହିଁଲ— ଆଗ ପରି ସେହି ଅନ୍ଧାର, ଜୁଳୁ-ଜୁଳିଆ ପୋକ ଠିକ ଆଗପରି ଜଳି ଦଉଡ଼ି ସେମିତ ଖୋଜୁଛନ୍ତି, ଅଗକୁ ଦୁ' ପାଦ ମାତ୍ର ଗୃଲିଛି, ତାର ଖିଆଲ ହେଲା 'ସେ' ନାହାନ୍ତି, ଘରକୁ ମନଦୁଃଖରେ ଗୃଲି ଯାଇଛନ୍ତି। ଘଡଟା ଚକଡ ହୋଇ ପଡ଼ିଲା। ଏତେ ଯେମିତ କଳିଜାଟା ଫାଟି ରକ୍ତ ଝଲକାଏ ବାହାରି ପଡ଼ିବ। ମୁଣ୍ଡରେ ହାତ ଦେଇ ଲଥକରି ସେଇଠି ବସି ପଡ଼ିଲା।

କାଲେ ଭବ ଦେଖିବ ଏଇ ଢ଼ଙ୍ଗରେ କଟୁ ସମସ୍ତ ପରେ ଘରକୁ ଢ଼ଳିଆସି ବିଛଣାରେ ପଡ଼ିଲା। ମନଟା ଜଳିପୋଡ଼ି ଯାଉଥାଏ। ଭାବନା କୂଳ ଅକୂଳ ମାଡ଼ି ଗୃଲିଛି। କଥା ଅପା ପୁଣି ଭାଇ ଜିଲ୍ ପିଲାଦିନେ ତା' ନାଁରେ ବାପା ବୋଉଙ୍କ ପାଖରେ କହୁଥିଲେ? ଛଡ ଭାଇଙ୍କ ଧରମ ଭାଇକରି, ପୁଣି ତାଙ୍କ ସଙ୍ଗରେ—ଛି, ଛି। ସୁରମା ଆଖି ବୁଜିଲା। ଭାବିଲା, ଚିଠି ଖଣ୍ଡିକ ଧରି ଦୌଡ଼ି ଯିବ ବୋଉ ପାଖକୁ। କହିବ—ବୋଉ, ଦେଖ, ମୋତେ ତୁମ୍ଭରେ ଏତେ ଗାଳିଦେଲ, କିନ୍ତୁ ବଦେଇର ଅନ୍ଧାରହାତ ତାକୁ ଅଟକାଇ ରଖିଲା। ବାରଭାଇ ସ୍ତ୍ରୀ, ତା' ଅନ୍ତରଟା ଦର୍ଶନରେ ପୂରିଗଲା। ଛି, ଧର୍ମ ନାଁରେ କେତେ ପାପ ନଶିତ ହୁଏ, କିନ୍ତୁ ସେ ଗୁଡ଼ା ଲୋକଙ୍କ ଆଖିକୁ ଦେଖା ଯାଏ ନାହିଁ। କିନ୍ତୁ ଯିଏ ଯାହାକୁ ପ୍ରାଣ ଠାରୁ ବେଶି ଭଲପାଏ, ଯାହା ବିନା ସାରା ଜୀବନଟା ହା-ହୁତାଶ ହେବାର ସମ୍ଭାବନା, ସେଇଠି ପୋଡା ସମାଜଟା ନାଲି ଆଖି ଦେଖାଏ କାହିଁକି?

ପୁଣି ଭାବିଲା—ସେ ନିଜେ ଭୁଲ କରିଛି, ଯେଉଁବେଳେ ସେ କହୁଥିଲେ—ସୁରମା, ଚାଲ ଏଇ ବନ୍ଧନ ଭିତରୁ ଛାଡ଼ି ଚାଲିଯିବା । ଏତେ ଲୋକଙ୍କ ଦୁନିଆରେ ସ୍ଥାନ ଅଛି, ଆମ ଦୁଇଜଣଙ୍କୁ କ'ଣ ଏ ଦୁନିଆରେ ଜାଗା ମିଳିବ ନାହିଁ ? ସେ ସେଉଁବେଳେ ମନାକଲା କାହିଁକି ? ଆଖିରୁ ଲୁହ ବୋହୁଥିଲା ।

ଅଣ୍ଟା ଆସି ଡାକିଲା—ଅପା, ମୁଁ ତୋ ପାଖରେ ଶୋଇବି । ସୁରମା କବାଟ କିଟିଲାଇ ଦେଲା । ବାରଟା ବାଜିଲା, ତଥାପି ସୁରମାକୁ ନିଦ ଆସିଲା ନାହିଁ, ଅତୀତର ସବୁ ଘଟଣା—ତାଙ୍କର ହସ, ତାଙ୍କର ଝିଙ୍କଲା ଭଳି କଥା, ସବୁ ଗୋଟି ଗୋଟି ହୋଇ ଆଖି ଆଗରେ ନାଚି ଯାଉଥାଏ ।

ଦୁଇଟା ବାଜିଲା । ସୁରମାକୁ ଟିକିଏ ଛାଇ ନିଦ ଆସିଛି କି ନାହିଁ, ସ୍ୱପ୍ନ ଦେଖିଲା—ସିଏ ତା' ଉପରେ ହାତ ପକାଇ ହଲାଇ ଦେଇ କହୁଛି—ସୁରମା, ମୋତେ ଅବିଶ୍ୱାସ କଲ—ନା ? ସୁରମା ଚମକି ପଡ଼ି ଉଠି ବସିଲା । ଘରଟାରେ ଅନ୍ଧାର ଖେଳି ଯାଉଛି । ରାତି ଦୁଇଟା ।

ତହିଁ ଆର ଦିନ ସକାଳେ ସୁରମା ମନଦୁଃଖରେ ଚେୟାର ଉପରେ ବସି, ବହି ଖଣ୍ଡ ଖୋଲାଇଛି, ଆଉ ଭାବୁଛି— ଠିକଣାଟା ବୁଝିଲେ ତାଙ୍କ ପାଖକୁ ଚିଠି ଖଣ୍ଡେ, କ୍ଷମା ପ୍ରାର୍ଥନା ମାଗି ଦେବ ।

ବାଣ୍ଡ ଦୁଆର ମୁହଁରେ ଡାକବାଲା ଦ'ଖଣ୍ଡ ଚିଠି ଦେଇ ଗଲା । ଗୁଡ଼ିକର ଗୋଟାଏ ସୁରମାକୁ ଆସି ଦେଖାଇଲା—ଏ ଚିଠି

ତାହାର ଦୋଷ ? ସୁରମା ତା' ଚିଠି ଖଣ୍ଡ ନିଏ, ଅନ୍ୟ ଖଣ୍ଡକ ମା'ଙ୍କୁ ଦେଇ ଦେବାକୁ କହି, ତା' ଚିଠି ଖୋଲି ପଢ଼ିଲା ।

ସ୍ନେହର ଭଉଣୀ,

ଆଜିକୁ ଏକବର୍ଷ ହେବ ତୋ ପାଖରୁ ଆସିଲିଣି । ଶାଶୂ ଘର କଥା ତ ଶୁଣିଛୁ, ସୁବିଧା ନ ପାଇ ଚିଠି ଦେଇ ପାରି ନ ଥିଲି । ଭଗବାନଙ୍କ କୃପାରୁ ମୁଁ ମୋ ମନଲାଖି ସ୍ୱାମୀ ପାଇଛି । ତୁ ଶୁଣି ଖୁସି ହେବୁ ବୋଲି ଫଟୋ ପଠାଇଲି ଦେଖିବୁ, ଅଜ ତୋ ମନକୁ କେମିତି ପାଇଲା ମୋ ପାଖକୁ ଚିଠି ଦେବୁ । ସତରେ ତୋ କଥା ମୁଁ ଅନେକ ଥର ପକାଏ, ତୁ ତାଙ୍କୁ ଚିହ୍ନିନୁ କି ନାହିଁ, ସେ ତୋତେ ଚିହ୍ନିଛନ୍ତି ବୋଲି କହନ୍ତି । ଏଣିକରେ ରହିଲି । ଚିଠି ଦେବୁ ।

ସ୍ନେହର,

ବକୁଲତା

ସୁରମା ଚିଠିଟି ସହ ସହ ଫଟୋଟିକୁ ଦେଖି ଚମକି ପଡ଼ିଲା, ଏ' ତ ସଞ୍ଜୟର ଫଟୋ !

ସୁରମାର ମୁଣ୍ଡଟା ଘୂରିଗଲା । ଆଗରେ ଚିଠିଖଣ୍ଡ, ସଞ୍ଜୟର ଫଟୋଟା ପଡ଼ିଥାଏ । କ'ଣ କରିବ କିଛି ଭାବି ପାରିଲା ନାହିଁ, ଅନ୍ତରରୁ କୋହ ଉଠିଲା ନାହିଁ, ଆଖିରୁ ଲୁହ ଦୁଇ ଟୋପା ଛଳ ଛଳ ହୋଇ, ତଳେ ଖସି ପଡ଼ିଲା ନାହିଁ । ଓଠ ଦୁଇଟି ବରଡ଼ା ପତ୍ର ପରି ଥରୁଥାଏ । ସଜଳ ଆଖି ଦୁଇଟି ସେହି ଚିଠିଖଣ୍ଡିକ ଉପରେ ସ୍ଥିର ।

କେତେବେଳ ଯାଏ ସେ ସେମିତି ବସିଲା ତାକୁ ବି ଜଣା ନାହିଁ । ସେ ଛବିରେ ଧାଡ଼ି ଗୁଡ଼ିକ ତଳେ ଦେଖାଗଲା—ରାଜ ପୋଷାକରେ ବନ୍ଧୁ ମୂର୍ତ୍ତିଟି ବସିଛନ୍ତି, ଆଉ ରାଜ ହସ ହସ ମୁହଁରେ ତାର ବାଳଗୁଡ଼ିକୁ ଆଉଁଷି ଆଉଁଷି ବଡ଼ ଆଦର କରି, ତାର ନାଲି ଟୁକୁ ଟୁକୁ ଗାଲରେ ଗୋଟିଏ ଚୁମ୍ବନ ଦେଇ କହୁଛନ୍ତି ତୁମେ ଭାରି ସୁନ୍ଦର—ନୁହେଁ ବନ୍ଧୁ ? ତୁମକୁ ପାଇ ମୁଁ ଦୁନିଆକୁ ଭୁଲି ଯାଉଛି, ସବୁ ଦୁଃଖ ପାସୋରି ଯାଉଛି ।

---

ମୁଦ୍ରାକର— ଶ୍ରୀ ଅଜୟକୁମାର ଘୋଷ
ଶ୍ରୀ ହରିନାଥ ପ୍ରେସ— କଟକ । ୧୯୪୬

# ସାରସ୍ୱତ ଭଣ୍ଡାର

## ପ୍ରକାଶିତ ଉପନ୍ୟାସ

| | |
|---|---|
| ଭୁଲ କାହାର ? | ଟ ୫ |
| ମର୍ତ୍ତ୍ୟସ୍ୱର୍ଗ | ଟ ୧୫ |
| ଅନାଥାଶ୍ରମ | ଟ ୧୫ |
| ପ୍ରେତପୁରୀର ଚନ୍ଦ୍ରାଧର | ଟ ୧୫ |
| ପଲ୍ଲୀବେଣୁ | ଟ ୧୮ |
| ସନ୍ତପନ | ଟ ୦ ୫୵ |
| ହେମେନ୍ଦ୍ର | ଟ ୦ ୫ |
| ଜଅଲୁଭିକ୍ଷା | ଟ ୧୨ |
| ଜୀବନର ଲକ୍ଷ୍ୟ | ଟ ୧୫ |
| ମୁକ୍ତ ଆକାଶର ବିହଙ୍ଗ | ଟ ୧୮ |
| ଶରଧାନାଳୀ | ଟ ୧୮ |
| କୁଳି | ଟ ୦ ୫ |
| ହେମକବିଙ୍କ କୁଟୀର | ଟ ୧୮ |
| କନ୍ୟାସୁନା | ଟ ୦ ୫୵ |
| ଚନ୍ଦ୍ରମାଳୀ | ଟ ୧ ୮ |
| ମଦନ ମଞ୍ଜରୀ | ଟ - ।୵ |
| ମାତୃମୁଗ (ଯନ୍ତ୍ରସ୍ଥ) | |

## —ସତୀଦାହ—

ଲକ୍ଷ ନୂତନ—ଅନ୍ତର୍ନିହିତପୂତା

ରକ୍ତରେ ଲେଖା ।

ଶୀଘ୍ର ପ୍ରକାଶିତ ହେଉଛି ।